

୰ ମହିଚରଣ ମହାପାତ୍ର

ଜନ୍ମସ୍ଥାନ—ଶିବପୁର, ପୋଷ୍ଟେ, ଟାଟଲଣ୍ଡନ ।

ଜନ୍ମ—୨୮ । ୧୦ । ୧୮୫୭ ମସିହା    ମୃତ୍ୟୁ—୧୬ । ୯ । ୧୯୧୦ ମସିହା ।

# ଉତ୍ସର୍ଗପତ୍ର

**ଶ୍ରୀଯୁକ୍ତ ବାବୁ ବୈକୁଣ୍ଠନାଥ ଦତ୍ତ**

ବି. ଏଲ୍., କର-କମଳେଷୁ

ପ୍ରିୟ ବୈକୁଣ୍ଠ !

ସୁଧାମୟ ସ୍ନେହ ଓ ଉଦ୍ଦୀପ୍ତ ମମତାପୂର୍ଣ୍ଣ ଯେଉଁ ସମ୍ବନ୍ଧସୂତ୍ର ମୋର କୈଶୋର ସମୟଠାରୁ ଏପର୍ଯ୍ୟନ୍ତ ମୋତେ ତୁମ୍ଭ ସହିତ ଦୃଢ଼ରୂପେ ବନ୍ଧନ କରି ରଖିଅଛି, ସେହି ସମ୍ବନ୍ଧସୂତ୍ରକୁ ଚିରସ୍ମରଣୀୟ କରିବା ସକାଶେ ଏହି ସାମାନ୍ୟ ପୁସ୍ତକଖଣ୍ଡି ରଚନା କରି ଅଦ୍ୟ ତୁମ୍ଭ ହସ୍ତରେ ସମର୍ପଣ କଲି । ତୁମ୍ଭେ ଏହି ପୁସ୍ତକଖଣ୍ଡି ସାଦରରେ ଗ୍ରହଣ କଲେ ନିଜ ଶ୍ରମ ସାର୍ଥକ ଜ୍ଞାନ କରିବି ।

ଜଗତ୍‌ପିତା ଶ୍ରୀ ପରମେଶ୍ୱରଙ୍କଠାରେ ମୁଁ ପ୍ରାର୍ଥନା କରୁଅଛି ଯେ, ଉପରୋକ୍ତ ସମ୍ବନ୍ଧସୂତ୍ର ମୋର ଜୀବନ ସହିତ ଶେଷ ନ ହୋଇ ମୋର ସନ୍ତାନସନ୍ତତି-ମାନଙ୍କୁ ତୁମ୍ଭ ସନ୍ତାନସନ୍ତତିମାନଙ୍କ ସହିତ ଚିରକାଳ ବନ୍ଧନ କରି ରଖୁ । ଇତି ।

୨୫ ତାରିଖ ଡିସେମ୍ବର
ସନ ୧୯୦୦ ମସିହା

ତୁମ୍ଭର
ଶ୍ରୀ ମଣିଚରଣ ଦାସ ମହାପାତ୍ର ।



# ପରିଚୟ



ଏହି "ବ୍ରଜବନ୍ଧୁ ବିରହ" ଖଣ୍ଡିଏ ନୂତନ ଧରଣର କବିତା ପୁସ୍ତକ । ଏଥିରେ ପ୍ରାଚୀନତ୍ୱ ଓ ନୂତନତ୍ୱର ସମାବେଶ ସୁନ୍ଦରରୂପେ ହୋଇଅଛି । ପ୍ରକାଶତଃ ରାଧାକୃଷ୍ଣଙ୍କ ବିରହବିଷୟକ ନବକଳ୍ପନା-ପ୍ରସୂତ ଭାବରତ୍ନମାନ ପ୍ରାଚୀନ ଛନ୍ଦରାଗସୂତ୍ରରେ ଏପରି ଭାବରେ ଗ୍ରଥିତ ହୋଇଅଛି ଯେ, କି ପ୍ରାଚୀନ କି ଆଧୁନିକ ଉଭୟଶ୍ରେଣୀର ଲୋକମାନେ ପରିଦର୍ଶନ ମାତ୍ରକେ ଏହାକୁ କଣ୍ଠହାର କରିବାକୁ ଇଚ୍ଛା ବଳାଇବେ । ଏଥିରେ ପ୍ରେମ, ଭକ୍ତି, ବାତ୍ସଲ୍ୟ ଓ ବୀରତ୍ୱର ଚିତ୍ରମାନ ସ୍ପଷ୍ଟରୂପେ ଚିତ୍ରିତ ହୋଇଥିବାରୁ ପ୍ରେମିକ ଭକ୍ତମାନଙ୍କୁ ଏହା ଯେ ବିଶେଷ ଆନନ୍ଦ ପ୍ରଦାନ କରିବ ଏବଂ ପ୍ରାଚୀନକାବ୍ୟପ୍ରିୟ ଲୋକ-ମାନଙ୍କର ନବରଚିତ କାବ୍ୟପ୍ରତି ଯେ ଆଗ୍ରହ ବଢ଼ାଇବ ଏଥିରେ ଅଳ୍ପ ସନ୍ଦେହ ନାହିଁ ।

ଏଥିର ରଚକ ଶିକ୍ଷାବିଭାଗର ଜଣେ ଉଚ୍ଚପଦସ୍ଥ ପରିଦର୍ଶକ କର୍ମଚାରୀ ଏବଂ ଆଧୁନିକ ଶିକ୍ଷାପ୍ରାପ୍ତ ମାର୍ଜିତରୁଚିର ଲୋକ । ସେ ପ୍ରଥମ ଉଦ୍ୟମରେ ଉତ୍କଳଭାରତୀର ସେବାରେ ଯେ ପ୍ରକାର କୃତକାର୍ଯ୍ୟ ହୋଇଅଛନ୍ତି ତାହା ପ୍ରଶଂସାର ବିଷୟ ଅଟେ । ଗ୍ରାହକ-ମାନେ ଯଥୋଚିତ ଆଗ୍ରହ ପ୍ରକାଶ କଲେ ସେ ଆପଣାର ପରିଶ୍ରମକୁ ସାର୍ଥକ ଜ୍ଞାନ କରିବେ ଏବଂ ଉତ୍ସାହିତ ହୋଇ କ୍ରମେ ଅନ୍ୟାନ୍ୟ ପୁସ୍ତକ ଲେଖିବାକୁ ଯତ୍ନବାନ୍ ହେବେ । ଇତି ।

୧ । ୧ । ୦୪
ବଡ଼ଦା



ଶ୍ରୀ ଅଭିନ୍ନ ନାୟକ
ମେନେଜର, ଜଗଦୀଶ ପ୍ରେସ



# ସୂଚିପତ୍ର

| ଛାନ୍ଦ | ବିଷୟ | ପୃଷ୍ଠା |
|---|---|---|

# ଓଁ ତତ୍ ସତ୍ ଓଁ



ରାଗ—କାମୋଦକାମ୍ବୋଦୀ, ତାଳ—ଝମ୍ପା

ଶାରଦବରଣି ! ବାଣି ! ଶୁଭ୍ରବର୍ଣ୍ଣବସନେ !
ବୀଣାବାଦ୍ୟବିନୋଦିନି ! କମଳଶ୍ରୀବଦନେ !
ବଳକ୍ଷବନଜାସନା ! ବିଶ୍ୱମ୍ଭରବନିତେ !
ବିଦ୍ୟାବୁଦ୍ଧିବିଧାୟିନି ! ବୃନ୍ଦାରକବନ୍ଦିତେ !
ବ୍ରଜବନ୍ଧୁବିଚ୍ଛେଦର ବହୁବାକୁ ବର୍ଣ୍ଣନା,
ବରଦେ ! ବଳିଛି ବର-ବାଳକର ବାସନା ।
ଏତର ବାଗ୍-ବସ୍ତୁ ବିଦ୍ୟେ ! ବାଗ୍‌ବିଭବବିହୀନେ,
ବକ୍ତବ୍ୟ ବଧବେଳେ ଏତରଛ ଶିପିନେ;
ବାଟପଡ଼ା ବାଳମିତ୍ରେ ବାତ୍ସଲ୍ୟ ବହୁଳ,
ଚପଳ ବଳମ୍ବ ବିନା ବଦ୍‌ଗଧ ବହୁଳ ।
ବ୍ରଜବନ୍ଧୁ-ବ୍ରଜବଧୂ-ବ୍ରଜବାଳ ବିଚ୍ଛେଦ,
ଏତକୁ ବରତ ବିନା ବୁଧବର୍ଗେ ବିନୋଦ;
ବିଚ୍ଛେଦବର୍ଣ୍ଣନା ବହୁ ବିନୋଦନ ବିସ୍ତାର,
ବୈପରୀତ୍ୟ ବୋଲି ବିଦ୍ୟେ ! ବାରେ ଗୋ ନ ବିଗ୍ଭର;
ବୀକ୍ଷ ବିଶେ ବିଶାଳାକ୍ଷି ! ବୈପରୀତ୍ୟ ବୋଧ,
ବରକ୍ଷେ ଏତାପ-ବାର ବଜ୍ରବାହ୍ନି ବାରଦ;
ବିଶେଷେ ବାରଧି-ବକ୍ଷ ବାଡ଼ବାଗ୍ନି ବିଦରେ,
ବଧୂରସ ବିଷ ବସେ ବ୍ୟାଳବର ବିବରେ ।





# ବ୍ରଜବନ୍ଧୁ ବିରହ

## ପ୍ରଥମ ଛାନ୍ଦ

ରାଗ—ଦେଶାକ୍ଷ ବା ଗୁର୍ଜ୍ଜରୀ *

### କଂସର କୃଷ୍ଣବଧ ଚିନ୍ତା

ଏଣେ ମନେ ପୂତନାଦ ଶନାଣ, ଗ୍ଲାନି ଭାଳିଲା କଂସ ପାପି ହୃଦ
"ମୋ ଗର୍ବଗଡବ୍ୟାଧି ନନ୍ଦବାଳ, ସେ ଥିଲେ ନୋହିବ ମୋର ମଙ୍ଗଳ,
ମାଧବ, ତାଙ୍କୁ କୃପାୟୁ କର
ବେ ହୋଇଛୁ ମୃଣୀ ଉର୍ଶିଣ ଅନ୍ତ । ୧
ବକାଦିଙ୍କି ସେହୁ ସଂହାର କଲ, ବହୁରଭ ପୂର୍ଣ୍ଣେ ଗୋପନଗରୀ
ପ୍ରତାପୀ ବୀର ଷଣ୍ଢ ଅଘ ବକ, ଗର୍ବଦର୍ପେ ଭ୍ରମୁଥିଲେ ତ୍ରିଲୋକ,
ତାଙ୍କୁ ସେ, କଲା ସହଜେ ହତ ।
ଏଡ଼େ କି ବଳୀ ନନ୍ଦ ବାଳସୁତ । ୨
ବାହୁବଳେ କଲା ତ୍ରିପୁର ଜୟ, ପେଲ୍ଲଥାକୁ ମୋତେ ଲାଗୁଛି ଭୟ,
ଶୁଣିଲି ଏବେ ସେ ଗୋପନଗରେ, ଗୋବର୍ଦ୍ଧନଗିରି ଟେକିଲା କରେ,
ପୂତନା, ପ୍ରାଣ କଲା ଶୋଷଣ,
କଲା ଭାଳସ୍ଥଳୁ ବାସ ଉଚ୍ଛନ୍ନ । ୩

---

*ଭକ୍ତକଲ୍ଲୋଳ "କୃଷ୍ଣ ବାଳଲୀଳା" ସ୍ୱରେ

ତାହାର ଭୟରେ ନିଶି ଦିବସ, ନିଦ୍ରା ନ କରେ ମୋ ନେତ୍ରେ ପ୍ରବେଶ,
ତାର କଥା ଶୁଣି ହୃଦ୍ୟ ଚମକେ, ଯେସନେ ନିକଟେ ଦେଖି ଅନ୍ତକେ,
କରଣ, କଂସ ବୁଦ୍ଧି ନ ଦିଶେ
କି ଉପାୟ ଅଛି ତାର ବିନାଶେ।" ୪

ଭାଳିଣ ଏମନ୍ତ ମଥୁରାପତି, ପାତ୍ର ମିତ୍ରଗଣେ ଡ଼କାଇ କତି,
କହିଲ, "ସକଳେ ଦେଇ ଶ୍ରବଣ, ଏକମନେ ଶୁଣ ମୋର ବଚନ,
ଅବ୍ରତ, ମୋର ନନ୍ଦତନୟ
କରେ ସେ ରାଜ୍ୟେ ନାନା ଅପଚୟ। ୫

ଅତି ଶୈଶବେ ପୂତନା ପ୍ରାଣ, କ୍ଷୀର ସଙ୍ଗରେ ସେ କଲା ଶୋଷଣ,
ପୁଣି ଅଘାଦିଙ୍କ ସଂହାର କଲା, ରକ୍ଷୀ ମାରି ତାଳଫଳ ଭକ୍ଷିଲା,
ଗୋପରେ, କରେ ସେ ଅତ୍ୟାଚାର
ଦଧି ଦୁଗ୍ଧ ଚୂରି କରେ ଅପାର। ୬

ଗୋପୀଙ୍କି ମୋହି ନନ୍ଦସୁତ କହ୍ନା, ଛଡ଼ାଇଛି ତାଙ୍କ ଗୃହବାସନା,
ନାନା ରାଜନୀତି ସମାଜନୀତି, ଭାଙ୍ଗେ ଦମ୍ଭେ ନୃପେ ନ କରି ଭୀତି,
ସାଧିଲା, ଘାତ ରାଜାଙ୍କ ବିନା
ଲଙ୍ଘେ ରାଜାଙ୍କ ରାଜଦ୍ରୋହୀ ସିନା। ୭

ନ ସାଧିଲେ ନନ୍ଦସୁତ ବିନାଶ, ନ ଲଭିବ ଶାନ୍ତି ମୋର ମାନସ,
ତା ନାଶେ ହେବ ଗୋପପୁର ସ୍ଥିର, ରାଜ୍ୟ ଶାନ୍ତିରକ୍ଷା ଧର୍ମ ରାଜାର,
ରଖିବା, ରାଜ୍ୟେ ରାଜବିଦ୍ରୋହୀ
ଶାସନ ବିଧି ବିରୁଦ୍ଧ ଅଟଇ।" ୮

କହେ ଉଗ୍ରସେନ, "ଶୁଣ ହେ କଂସ, ସହଜ ନହେ ନନ୍ଦସୁତ ଧ୍ୱଂସ,
ବୃଥାରେ କେତେ ନ କଲ ଉପାୟ, ନାଶିବାକୁ ବ୍ରଜପତି ତନୟ,
କୁଟିଳା, ଧାତ୍ରୀ ହୋଇ ପୂତନା
ମାରୁଁ ତାହାକୁ ନିଜେ ମଲା ସିନା। ୯

ସାଧିବାକୁ କୃଷ୍ଣ ପ୍ରାଣ ବିୟୋଗ, କଲ ତ ପୂତନା ଆଦି ନିୟୋଗ,
ଗଲେ ସେମାନେ ମହାଦର୍ପ କରି, ଜଣେ ତ ନଇଲା ଗୋପରୁ ଫେରି,

ସାମାନ୍ୟ, ନୁହେ ନନ୍ଦତନୟ,

ଅପେୟ କାଳିନ୍ଦୀ ଜଳକ ପେୟ । ୧୦

ଚୂରିଲା ଗୁରୁଦର୍ପ ବାସବର, ଟେକି ବାମକରେ ଗୁରୁ ଭୂଧର,

ଗ୍ରାସ କଲା ବନେ ପ୍ରବଳାନଳ, ଇଷିତରେ ନନ୍ଦରାଜା ଦୁଲାଳ,

ଅଦ୍ଭୁତ, ଏଡ଼େ ଜନ୍ମ ଭୁବନେ,

ଶୁଣା ତ ନାହିଁ ଭୂତ ବର୍ତ୍ତମାନେ ।” ୧୧

କ୍ରୋଧେ ଗର୍ଜି ରଦଚ୍ଛଦ କାମୋଡ଼ି, ପିଧାନରୁଁ ତୀକ୍ଷ୍ଣ ଖଡ଼ଗ କାଢ଼ି,

କମ୍ପମାନ ଅଙ୍ଗେ କହିଲା କଂସ, ଆରକ୍ତ ନେତ୍ରେ ଚାହିଁ ଦଶଦିଶ,

“ସାମାନ୍ୟ, ନର ନନ୍ଦର ଶିଶୁ,

ମୋ ଆଗେ ଗାଉଛ ତାହାର ଯଶ । ୧୨

ସିଂହର ସମ୍ମୁଖରେ ଶୃଗାଳ ଖ୍ୟାତି, ଯେ ଜନ କରଇ ସେ ମୂଢ଼ ଅତି;

ଏକ୍ଷଣି ଯାଇ ମୁଁ ଗୋପନଗର, ଛେଦିବି ମନ୍ଦ ନନ୍ଦସୁତ ଶିର,

ଦେଖିବ, ତାର କେତେ ଶକତି,

ହୀନ ସ୍ଥଳେ କି ସିଂହ କରେ ଭୀତି ? ୧୩

ନନ୍ଦର ତନୟ ଅଟେ ବାଳକ, ବାଳବଧେ ହୁଏ ଗୁରୁପାତକ,

ତେଣୁ ସେ ଏଯାଏ ରହିଛି ପ୍ରାଣେ, ଆଜ ତାହାକୁ ବଧିବି କୃପାଣେ,

ଅରାତି, ମୋର ନନ୍ଦର ସୁତ,

ଅରାତିବିନାଶ ଧର୍ମସଙ୍ଗତ ।” ୧୪

ଯମଦଣ୍ଡ * ଶୁଣି କଂସ ବଚନ, କରି ବଦନେ ରଦନ ଘର୍ଷଣ;

କହିଲା ,“ନରେଶ ! ଥାଉଁ ଏ ଭୃତ୍ୟ, ତୁମ୍ଭର ଗୋପେ ଯିବା ଅନୁଚିତ,

ମୁଁ ଆଜ, ବ୍ରଜେ ଗମନ କରି,

ନନ୍ଦସୁତକୁ ଆଣିଦେବି ଧରି ।” ୧୫

ତାର ବଚନେ କଂସ ହସି ହସି, ଘନେ କି ବକାଳୀଛବି ପ୍ରକାଶି,

କହିଲା, “ତ୍ୱରା ଯାଇ ଗୋପଦେଶ, ନନ୍ଦସୁତକୁ ବାନ୍ଧି ନେଇ ଆସ,

---

* କଂସର ଜଣେ ସେନାପତି

ଅସୁର-ରକ୍ତ-ପିପାସୁ ଅଟି,
ମୋର ହୋଇଛି ଅତ୍ୟନ୍ତ ପିପାସା ।" ୧୬

ଯୋଡ଼ି ବେନି କର କହେ ଅକ୍ରୂର, "ନ କର ମଣିମା ! ଏ ବଦାଚାର,
ସଂସାରେ ରଟିବ ନିନ୍ଦା ଅପାର, ଡ଼ରିଲ ଗୋପବାଳେ କଂସାସୁର,
କହିବେ, ହସି ଦେବ ମାନବ,
ହେବ ଲଘୁ ତବ ବୀରଗୌରବ । ୧୭

ଛଦ୍ମେ କର ଧନୁତ୍ସବ ଭିଆଣ, ତନିପୁରକୁ ଦେବା ନିମନ୍ତ୍ରଣ,
ପର୍ବବ୍ୟାଜେ ଆଣି ନନ୍ଦନନ୍ଦନ, କପଟେ ଘେନିବା ତାର ଜୀବନ,
ତହିଁରେ, ନିନ୍ଦା ନ ହେବ ଲେଶ,
ଗୁପତେ ସାଧିତ ହେବ ଉଦ୍ଦେଶ୍ୟ । ୧୮

ଧନୁତ୍ସବପୁର ପ୍ରଥମଦ୍ୱାରେ, ରଖାଇବା ମତ୍ତମାତଙ୍ଗବରେ,
ତହିଁ ନନ୍ଦସୁତେ ଯାଅନ୍ତେ ମେଳି, ନିଷ୍ପେଷି ଦେବ ମାତଙ୍ଗକୁ ଗେଳି,
ସହଜେ, ତବ ଭୀମ କୁଞ୍ଜର
ଘେନିବ ପ୍ରାଣ ନନ୍ଦସୁତଙ୍କର । ୧୯

ଭାଗ୍ୟବଳେ ତହିଁ ଗଲେ ଉବୁରି, ଦ୍ୱିତୀୟଦ୍ୱାରେ ମଲ୍ଲେ ମେଳକରି,
ରଚି ମଲ୍ଲକ୍ରୀଡ଼ା ତାହାଙ୍କ ସଙ୍ଗେ, ନାଶିବେ ତାଙ୍କ ପ୍ରାଣ କ୍ରୀଡ଼ାରଙ୍ଗେ,
ମଲ୍ଲଙ୍କୁ, ବଳି ନାହିଁ ତ ବଳୀ
ଗୋପ ପିଲାଙ୍କୁ ଦେବେ ସେ ଦଳି ।" ୨୦

ସଚିବ ବଚନେ ଲଭି ସନ୍ତୋଷ, କହିଲ ପ୍ରଫୁଲ୍ଲବଦନେ କଂସ,
"ସତ୍ୱର ଧନୁତ୍ସବ ସମାଚାର, ତ୍ରିପୁର ମଧ୍ୟରେ କର ପ୍ରଚାର,
ନିର୍ମିଣି, ରମ୍ୟ ଧନୁ ମନ୍ଦିର
ମୋ ପଦଭକ୍ତି ସମାବେଶ କର । ୨୧

ଆପଣେ ଯାଇଣ ଗୋପଧାମକୁ, ଘେନି ଆସ ନନ୍ଦସୁତ ଶ୍ୟାମକୁ,
ଯଥା ବ୍ୟାଧ ଘେନି ପକ୍ଷିଶାବକ, ବାହୁଡ଼େ ଆବାସେ ବହୁ ପୁଲକ,
ତାହାକୁ, ପୁଣି ରନ୍ଧନଶାଳେ
ଦଗଧ କରିବି ଜଳନ୍ତାନଳେ ।" ୨୨

କଂସ ଆଜ୍ଞାମତେ ସମ୍ଭାର କରି, ଗଲେ ଅକ୍ରୁର ରଥେ ଗୋପପୁରୀ,
ପଥେ ଯାଉଁ ଯାଉଁ ଭାଳିଲେ ମନେ, "ଅଛି କଂସ ତ୍ରାସ ତ୍ରିଭୁବନେ,
ଜଗତ, ଏବେ ଅତି କାତର,
ସହି ନ ପାରି କଂସ ଅତ୍ୟାଚାର । ୨୩

ରକ୍ଷକ ପାଳକ ଏ ଜଗତର, ଅଟନ୍ତି ସିନା ପ୍ରଭୁ ଦାମୋଦର,
ଜଗତରକ୍ଷାର୍ଥେ ପୁରୁଷୋତ୍ତମ, ହୋଇଛନ୍ତି ଅବା ଗୋପେ ଜନମ,
ନୋହିଲେ, ଏଡ଼େ ଅଦ୍ଭୁତମାନ,
କରି ପାରନ୍ତି କି ଇତରଜନ । ୨୪

ପ୍ରକୃତି ରଞ୍ଜନ କରିବା ପାଇଁ, ନୃପତିବର୍ଗର ସୃଷ୍ଟି ଅଟଇ,
ନିଜ ଧର୍ମ ନ ପାଳିଲେ ଭୂପତି, ଭୋଗ ସେ କରଇ ଅପାର ଶାସ୍ତି,
ଯେସନେ, ନିଜ ଧର୍ମ ନ ପାଳି,
ପ୍ରଭୁ କୋପେ ଭୃତ୍ୟ ମରଇ ଜଳି । ୨୫

ଅଧର୍ମୀ ରାଜାର ହେଲେ ସଚିବ, ନଷ୍ଟ ହୁଏ ଧର୍ମ ଯଶ ଗୌରବ,
ଜୀବାନ୍ତେ ନରକେ ହୁଏ ତା ବାସ, ରାଜା ଦୁର୍ଗତିର ଭୁଞ୍ଜେ ସେ ଅଂଶ,
ଯେସନେ, କର୍ମକାର ପ୍ରହାର,
ସହେ ଧାତୁର ସଙ୍ଗେ ବୈଶ୍ୱାନର । ୨୬

ଯେ ମନ୍ତ୍ରୀ ନୃପତି ତୁଷ୍ଟି କାରଣ, ଅସତ୍ୟ ମନ୍ଦ ମନ୍ତ୍ର କରେ ଦାନ,
କେ ଅଛି ନାରକୀ ତାର ସମାନ, ମିଥ୍ୟା ଚାଟୁବାଦୀ ଅଟେ ସେ ଜନ,
ସୁମନ୍ତ୍ର, ତୁଚ୍ଛ କରେ ଯେ ନୃପ,
ଇହ ପରକାଳେ ଭୁଞ୍ଜେ ସେ ତାପ । ୨୭

ନ ଦେଲି କେତେ ବା ସଦୁପଦେଶ, ଗୋଟିଏ ମାତ୍ର ନ ଘେନିଲେ କଂସ,
ପାଦେ ସେ ଖଟାଇ ରଖିଛି ଦେବେ, ନାହିଁ ତାର ଦୟା ଦେବ ମାନବେ,
ଦେବକୀ, ବସୁଦେବ ଏ ଦୁହେଁ,
ବିନା ଦୋଷେ ଛନ୍ତି ତା ବନ୍ଦୀଗୃହେ । ୨୮

ଅଜ କୃଷ୍ଣରେ ପଶିବି ଶରଣ, ସେବିବି ତାଙ୍କ ଅଭୟ ଚରଣ,
ସେ ନାଶିବେ ମୋର ଦୁର୍ଗତି ଭୟ, ନାଶେ ତମକୁ ଯଥା ଚନ୍ଦ୍ରୋଦୟ,

ନିକଟେ, ହତ ହୋଇବ କଂସ,
ଅବନୀର ଦୁଃଖ ହେବଟି ଧ୍ୱଂସ ।" ୨୯

ଏମନ୍ତ ଭାଳିଁ ଭାଳିଁ କଂସଦୂତ, ଗୋପ ନଗରେ ହେଲା ଉପନୀତ,
ବୃକ୍ଷଚ୍ଛାୟାତଳେ ରଖିଣ ରଥ, ଗୋଷ୍ଠେ ଭ୍ରମିଲା ଲୋଡ଼ି ନନ୍ଦସୁତ,
ଭ୍ରମର, ଯଥା ଲୋଡ଼େ ମରନ୍ଦ,
ସୁଭାଗ୍ୟବଳେ ଭେଟିଲା ଗୋବିନ୍ଦ । ୩୦

ଦୋହନରତ ଗୋପବାଳ ମେଳେ, ଦେଖିଲା ନବଘନରୂପ ଡ଼ୋଳେ,
ପୀତବସନ କେକୀପୁଚ୍ଛ ଚଳ, ପଦ୍ମ-ନୟନ ରମ୍ୟ ବନମାଳ
ସହିତ, ନବ ଦ୍ୱିଗୁଣ ଚିହ୍ନ,
ଧ୍ୱଜ ବଜ୍ରାଙ୍କୁଶ ପତାକାମାନ । ୩୧

ଅନୁମାନେ ଚିହ୍ନି ନନ୍ଦ ଦୁଲାଳେ, ପ୍ରଣମି ଅକ୍ରୂର ଲୋଟିଲା ତଳେ,
ଉଠି ଉଭାହେଲା ଯୋଡ଼ିଣ କର, ତା ଦେଖି ଭକ୍ତପ୍ରିୟ ବଂଶୀଧର,
ପୁଚ୍ଛିଲେ, "କିସ ତୁମ୍ଭର ନାମ,
କିପାଇଁ ଆସିଅଛ ବ୍ରଜଧାମ ।" ୩୨

କୃଷ୍ଣ ବାଣୀ ଶୁଣି ଦୂତ କଂସର, କହିଲା, "ମୋ ନାମ ଅଟେ ଅକ୍ରୂର,
ତୁମ୍ଭଙ୍କ ନେବାକୁ ମଥୁରାଦେଶ, ମୋତେ ଛନ୍ତି ପେଷି ନୃପତି କଂସ,
ସେଠାରେ, ଦେଖି ଧନୁ ଉତ୍ସବ,
ପୁଣି ଗୋପପୁରେ ଫେରି ଆସିବ ।" ୩୩

ଅକ୍ରୂରକୁ ହସି କହନ୍ତି ହରି, "ଶୁଣିଛୁ ଅତି ରମ୍ୟ ମଧୁପୁରୀ,
ଅଟେ ଅତି ଶୁଭ୍ର ରାଜମନ୍ଦିର, ସ୍ୱର୍ଗପୁରକୁ ବଳିଣ ରୁଚିର,
ଦେଖିବ, ବୋଲି ଶ୍ରଦ୍ଧା ଅଧିକ,
ଯିବ ଅନୁମତି ଦେଲେ ଜନକ । ୩୪

ମୋଠାରେ ଅକ୍ରୂର ! ସଦୟ ହୋଇ, ନନ୍ଦ ଯଶୋଦାଙ୍କୁ କହ ବୁଝାଇ,
ଅଥବା ତର୍ଜନ ବଚନ କହ, ଅବା ତାଙ୍କ ଚିତ୍ତେ ଭୟ ଜନ୍ମାଇ,
ମଥୁରା, ମୋତେ ଘେନିଣ ଆଜ,
ଯିବାପାଇଁ ତୁମ୍ଭ ହୁଅ ହେ ସଜ ।" ୩୫

କଂସଦୂତ ଶୁଣି କୃଷ୍ଣ ବଚନ,    ପ୍ରବେଶିଲା ତ୍ୱରା ନନ୍ଦ ସଦନ,
କଂସ ଆଜ୍ଞା ପତ୍ର ନନ୍ଦକୁ ଦେଇ,    କହିଲା "ପୁତ୍ରଙ୍କୁ ଦିଅ ପଠାଇ,
ବାହୁଡ଼, ଆଜ ଯିବ ମଥୁରା,
ପୁତଙ୍କୁ ସଜ କରଅଣ ତ୍ୱରା ।" ୩୬
ନନ୍ଦ ପଢ଼ି କଂସ ଆଜ୍ଞା ପତ୍ରର, ବସି ପଡ଼ିଲା ଧରଣୀ ଉପର,
ଶିରେ ରଖି କର ଗୃହିଁ ଧରଣୀ, ଶୋକେ ଅତି କଷ୍ଟେ ଉଚ୍ଚାରି ବାଣୀ,
କହିଲା, "ମୁହିଁ ଥାଉଁ ଜୀବତ,
ମୋ ପୁତ୍ରେ ନିମନ୍ତ୍ରଣ ଅନୁଚିତ ।" ୩୭
ବସିଣ ଆସନେ କହେ ଅକ୍ରୂର, "ତୁମ୍ଭେ ନନ୍ଦ ! ଜଣେ ସାମାନ୍ୟ ନର,
କଂସର କୃପାରୁ ହେଲ ବ୍ରଜେଶ,    ଏବେ ବଢ଼ୁଅଛ କଂସର ଦୋଷ,
ଗରବ, ଏତେ କିପାଇଁ ନନ୍ଦ,
ସରବ କ୍ଷଣକେ ତୁମ୍ଭ ସମ୍ପଦ ।" ୩୮
ଅକ୍ରୂର ବଚନେ ସଭୟ ବାଣୀ,    କହିଲା ନନ୍ଦ ଯୋଡ଼ି ବେନିପାଣି,
"ହେ ଦୂତ ମୁହିଁ ଅଟେ ବୃଦ୍ଧ ଗୋପ, ମୋ କଥାକୁ ଭଦ୍ର ! ନ କର କୋପ,
ଶଗ୍ରାପି, କର ଗ୍ରାନ୍ତିକି ଦୂର,
ତୁଅ ପୁଷ୍ଟ ଭୁଞ୍ଜି ଅଧାମ ସର । ୩୯
ନୃପତି ଆଜ୍ଞାକୁ ଅଯୁକ୍ତ ନାହିଁ,    ପୁତଙ୍କୁ ବହନ ଦେବ ପଠାଇ,
ତାହାଙ୍କ ସଙ୍ଗେ ଯିବ କଂସଧାମ,    ମୋର ଜୀବ ପରମ ରାମ ଶ୍ୟାମ,
ତାହାଙ୍କୁ, ଦୂର ଦେଶକୁ ପେଶି,
ମୁଁ ଗୋପପୁରେ କି ରହିବି ବସି ?" ୪୦
କହଇ ଅକ୍ରୂର, "ହେ ବ୍ରଜନାଥ !    ପୁତ୍ରଙ୍କୁ ଏତେ ସ୍ନେହ ଅନୁଚିତ,
ଅତ୍ୟନ୍ତ ସ୍ନେହର ଦୋଷ ଅପାର, ପୁତ୍ର ପାଶେ ପିତା ନ ରହେ ଚିର,
ନିଜର, ରକ୍ଷାକାର୍ଯ୍ୟେ ଶିକ୍ଷିତ,
ପୁତ୍ରେ କରିବା ପିତାର ଉଚିତ ।" ୪୧
ଅକ୍ରୂର ବଚନେ କହଇ ନନ୍ଦ,    "ଅଟନ୍ତି ଅତି ଶିଶୁ ମୋର ଗୋବିନ୍ଦ,
ସେ କେମେ ଶିଖିବ ସଂସାରନୀତି, ତା ଶିକ୍ଷା ବୟସ ନାହିଁ ମୋ ମତି ,

ଶୈଶବରୁଁ, କୃଷ୍ଣ ଭଳିଁରେ ପଡ଼ି,
ନିଜ ରକ୍ଷା କଲ କେତେ ସଙ୍କଟୁଁ । ୪୨
ବୃନ୍ଦାବନେ ଦିନେ ପ୍ରବଳ ବକେ, ବିଦାରିଲା ତାଙ୍କୁ ସୁତୀକ୍ଷ୍ଣ ନଖେ
ଏକ ଅଜଗର ଦିନେ ପ୍ରୟାସ, କଲା ଶ୍ୟାମଙ୍କୁ କରିବାକୁ ଗ୍ରାସ;
ଏରୂପେ, ଘୋର ବିପଦ ନାନା
ପାରିହେଲ ଶ୍ୟାମ ସାହାଯ୍ୟ ବିନା ।" ୪୩
ଶ୍ୟାମ କଥା ଶୁଣି ନନ୍ଦ ଅନ୍ଦର, ଗଳ୍ପ କଲେ ବସି ନାନା ପ୍ରକାର
ଏକାଳେ ଆସି ଏକ ପରିଗୃହୀ, ଔଷଧ ଦ୍ରବ୍ୟ ପାନ ପୂର୍ଣ୍ଣ କରି
ରଖିଲା, କଂସଦୂତ ଛଦ୍ମରେ,
ବିନୟେ କହିଲା, "ବସ ଆହାରେ ।" ୪୪
କଂସର ଉଗର ସାରି ଭୋଜନ, ରଥଅଶ୍ୱ ପାଶେ କଲା ଗମନ,
ବାଜି-ପୁଚ୍ଛ-କେଶ-ଲୋଭୀ-ବାଳକେ, ବିତାଡ଼ିତ କରି ତର୍ଜନବାକ୍ୟେ,
ଅଶ୍ୱଙ୍କୁ, ଦେଇ ଭୋଜନ ପାନ,
ପଲଙ୍କେ ଦଣ୍ଡେ ସେ କଲା ଶୟନ । ୪୫
ଅନୁଚରଙ୍କୁ ଦେଖି ବ୍ରଜ ବାଳକେ, କଲେ ଗଳ୍ପ ହସିଣ କଉତୁକେ,
କେ କହେ "ଯେତେ କେଶ ତା ବଦନେ, ଥାନ୍ତା ଯଦି ସେତେ ବୃନ୍ଦାବନେ
ଗୋଧନ, ଯେତେ ଗୋପ ନଗରେ,
ଭାସାନ୍ତେ ଗୋପଙ୍କୁ କ୍ଷୀର-ସାଗରେ ।" ୪୬
କେ କହେ, "କି ସ୍ଥୂଳ ତା ଅପଧନ, ସରି ନ ହେବ ଗିରି ଗୋବର୍ଦ୍ଧନ ।"
କେ କହେ, "ଭଲ୍ଲୁକ ପରି ଗର୍ଜନ, କରଣ ମୋତେ ସେ କଲା ତର୍ଜନ,
ସ୍ଥୂଳାଙ୍ଗ, ବନ୍ଧୁ ନ ପାରେ ଧାଇଁ,
ତେଣୁ ମୋତେ ଧରି ପାରିଲା ନାହିଁ ।" ୪୭
କେ କହେ, "କେଡ଼େ ଗର୍ବ ଅଛି ଧରି, ଦିଶଇ ଦୁର୍ଦ୍ଦର୍ଶୀ ନାସା ପରି ।"
କେ କହେ, "ଅଟେ ସେ କଶ୍ୱାନ୍ଦ୍ରବାୟୁ, ତା ବସ୍ତ୍ର ବୁଣେ ଧନ୍ୟ ତନ୍ତୁବାୟୁ ।"
କେ କହେ, "କିସ କରି ଆହାର,
କରିଛି ଏଡ଼େ ସ୍ଥୂଳ ଦେହ ତାର ।" ୪୮

କେ ବୋଲେ,"ଦୃଢ ଅଟେ ଲମ୍ବୋଦର, ଶୋଭନ୍ତିାର ତା ଲମ୍ବଉଦର,
ଦେଇ ନାହିଁ ବଧି ଗଜବଦନ, ତନୁ ଗୋଟି ତାର ଗଜଗଞ୍ଜନ,
ଦେଖିଣ, ତାର ବରଷ୍ଠାଗତ,
ହେଲା ମୋ ହସ ଅସମ୍ଭାଳ ଅତ ।" ୭୯
କେ ବୋଲେ,"ସେ ଅଜସ୍ଥୂଳ ଉଦରେ, ରଖିଥାନ୍ତା ବ୍ରଜବାଳମାନଙ୍କରେ ।"
କେ କହେ,"ଭୃତ୍ୟ ଅହିଲ୍ଲି ପଳାଇ, ଅଘ ପରି ଗିଳିଥାନ୍ତାରେ ଭାଇ ।"
କେ ବୋଲେ, 'ତାର ପେଟ ବଦାର,
ଶ୍ୟାମ ପରି ଅସିଥାନ୍ତୁ ବାହାର ।" ୮୦
କେ କହେ, "ଦୃଢତି ଅତ ବର୍ତ୍ତୁଳ, ବସିଲେ ଦିଶେ ଶାଳଗ୍ରାମ ତୁଲ,
ତାହାର ଗଭୀର ନାଭିଗହ୍ୱର, ଯଥା ଶାଳଗ୍ରାମ ମୁଖବିବର,
ସ୍କନ୍ଧରେ, ତାର ଯଜ୍ଞୋପବୀତ,
ହେମ-ରେଖା ପରି ହୁଏ ପ୍ରତୀତ ।" ୮୧
ଏମନ୍ତ କୁହାକୁହି ହୋଇ ବାଳେ, ପ୍ରବେଶିଲେ ଯାଇ ନନ୍ଦର ଅଳେ;
କୃଷ୍ଣ ଚରିତ ଅମୀୟ ପୂରିତ, ପାନ କର ହୋଇ ପ୍ରଫୁଲ୍ଲଚିତ୍ତ,
ସୁଜନେ, ମନେ କର ସ୍ମରଣ,
ଦିବା ନିଶି ଚିନ୍ତାମଣି ଚରଣ । ୮୨

---

# ଦ୍ୱିତୀୟ ଛାନ୍ଦ

ରାଗ—ଧନାଶ୍ରୀ *

## କୃଷ୍ଣଙ୍କର ଆତ୍ମଚିନ୍ତା

ଅକ୍ରୂରଙ୍କୁ ଦେଇ ମେଲାଣି ହରଷେ, ମହାଯୋଗେଶ୍ୱର ହରି,
ଚିନ୍ତନ୍ତି ଚରଣେ ଯମୁନାର କୂଳେ ନୀପମୂଳେ ବସି କରି,
"କାଲି ବ୍ରଜଭୁବନ, ତେଜି ମଥୁରା ଯିବି ବହନ । ୧

* ବୈଦେହୀଶବିଳାସ "ବସେ ବଶିଷ୍ଠ ଜାବାଳ ବାମଦେବ" ରାଗେ

ଭକ୍ତଙ୍କ ବାସନା ପୂର୍ଣ୍ଣ କରିବାକୁ ହେଲି ମୁଁ ମର୍ତ୍ତ୍ୟ ମାନବ,
ଭକ୍ତ ମୋର ପିତା ମାତା ଭାଇ ବନ୍ଧୁ ଭକ୍ତ ପରମବିଭବ,
ବ୍ରଜଧାମନିବାସୀ, ମୋର ପରମଭକ୍ତ ବିଶ୍ୱାସୀ । ୨

ପୂର୍ବେ ବହୁଜନ୍ମେ ପ୍ରେମମୟଚିତ୍ତେ ସରଳଭକ୍ତିରେ ମଜ୍ଜି,
ଲଭିବାକୁ ମୋତେ ଏକାନ୍ତ ମାନସେ ନିର୍ବାଣମୁକ୍ତି ବରଜି,
ନାନା ଭାବ ମନାସି, ମୋତେ ସେବିଲେ ବ୍ରଜବାସୀ । ୩

ତାହାଙ୍କ ବାସନା ପୂର୍ଣ୍ଣ କଲି ବ୍ରଜେ ରଚି ନାନା ଲୀଳାରଙ୍ଗ,
କାଲି ବ୍ରଜଲୀଳା ସାଙ୍ଗ ମୁଁ କରିବି ପରିହରି ତାଙ୍କ ସଙ୍ଗ,
ମହୀ ଅତି କାତର, ସହି ନ ପାରେ ଭାର ପାପର । ୪

ମୋର ମହାଶକ୍ତି ଜଗଦ୍ଧାତ୍ରୀ ଲକ୍ଷ୍ମୀ ସନାତନୀ ମହାମାୟା,
ମୋର ଭକ୍ତବାଞ୍ଛା ପୂର୍ଣ୍ଣ କରିବାକୁ ଧରିଛନ୍ତି ନାରୀକାୟା
ବୃଷଭାନୁଜା ରୂପେ, ତାଙ୍କୁ ରଖିକରି ଯିବି ଗୋପେ । ୫

ଦୁଷ୍ଟ ରାଜନ୍ୟ ରାକ୍ଷସ ଅତ୍ୟାଚାରରେ ଜଗତ ଅତି ପୀଡ଼ିତ,
ତାହାର କାତର କ୍ରନ୍ଦନେ ହେଉଛି ମୋର ଶ୍ରୁତି ବଧିରିତ,
ଧର୍ମ ବିଲୁପ୍ତ ଅପି, ହୁଏ ସଞ୍ଚୟ ପାତକରାଶି । ୬

ସାଧୁ ପରିତ୍ରାଣ ଦୁଷ୍ଟ ବିନାଶନ ଧର୍ମ ସଂସ୍ଥାପନ କରି,
ନିଜ ଧାମେ ପୁଣି ଗମନ କରିବି ମର୍ତ୍ତ୍ୟଲୀଳା ପରିହରି,
ଏବେ ମଳିନ ଅତି, ଧର୍ମ ସମାଜ ଶାସନନୀତି । ୭

ଲୀଳାରଙ୍ଗେ ଦେଇ ନୀତିଶିକ୍ଷା ମର୍ତ୍ତ୍ୟେ ସାଧିବି ଜଗତହିତ;
ପାଣ୍ଡୁନନ୍ଦନଙ୍କ କରିଣ ମୋହର ଉଦ୍ଦେଶ କର୍ମ ନିମିତ୍ତ;
ଅବଲମ୍ବି ନିମିତ୍ତ, ହୁଏ ମୋର ଇଚ୍ଛା ସମ୍ପାଦିତ । ୮

ଦୁଷ୍ଟ ରାଜନ୍ୟ ମୁଁ ଧ୍ୱଂସ କରିବାକୁ କୁରୁକ୍ଷେତ୍ରମହାହବେ,
ମୋର ସଖାରୂପେ କରିଅଛି ଜନ୍ମ ବୀରେନ୍ଦ୍ର ପାଞ୍ଚପାଣ୍ଡବେ;
ଦୁଷ୍ଟ ମଗଧପତି, ବନ୍ଦୀ କରିଛି ବହୁ ନୃପତି । ୯

ଦେବତାଙ୍କ ପାପଫଳ ଭୋଗ ପାଇଁ ଜନ୍ମ ହେଲ କଂସାସୁର,
ସ୍ୱପାତକଫଳ ଭୁଞ୍ଜିଲେଣି ବନ୍ଧୁ ମୋ ଭକ୍ତ ସକଳ ସୁର;
ବଧି ମଥୁରାପତି, ଦେଶ ଦେବେ ଦଣ୍ଡରୁ ମୁକତି । ୧୦

ତୁମେ ନ ତର୍ପ୍ପଣ ଦେବେ ଦେଲେ ମୋତେ ପୂର୍ବେ ବ୍ରହ୍ମହତ୍ୟାଦୋଷ,
ଗୁରୁନିନ୍ଦା ପାପେ ମଜ୍ଜି ସେମାନେ ଭୁଞ୍ଜିଲେ ଅପାର କ୍ଳେଶ;
ଭଲ ମନ୍ଦର ଜ୍ଞାନ, ଅଟେ ସିନା ମୋ ମାୟା ବିଧାନ । ୧୧

ନାହିଁ ମୋର ପାପ-ପୁଣ୍ୟ, ମୁଁ ଅଛଇ ନିର୍ଗୁଣ ବ୍ରହ୍ମ ସ୍ୱଭାବେ,
ଗୁଣମୟୀ ମାୟା ରଚେ ସୃଷ୍ଟିଲୀଳା ମୋ ସଙ୍ଗେ ମଜ୍ଜି ମୋ ଭାବେ,
ମାୟା ନୁହେ ସ୍ୱତନ୍ତ୍ର, ମୁହିଁ ଯନ୍ତ୍ରୀ ମାୟା ସିନା ଯନ୍ତ୍ର । ୧୨

ମାୟାତୀତ ଯେଣୁ ନିର୍ଗୁଣ ମୁଁ ତେଣୁ ସୃଷ୍ଟି ଆଦ୍ୟେ ଧରେଁ ଗୁଣ,
ତ୍ରିଗୁଣରୂପିଣୀ ସନାତନୀ ମାୟା ପ୍ରକାଶିତ ହୁଏ ପୂର୍ଣ୍ଣ;
ବସ୍ତୁ ସଦୃଶ ମାୟା, ତହିଁ ବିଶ୍ୱ ସିନା ମୋର ଛାୟା । ୧୩

ମୋ ମାୟା ମୋଠାରୁ ଅଭିନ୍ନ ଅଛଇ ସ୍ୱମାୟାରେ ମୁଁ ବିହରି,
ବିଶ୍ୱରୂପେ ସିନା ପ୍ରକାଶିତ ହୁଏଁ ବିବିଧ ଆକୃତି ଧରି;
ସୃଷ୍ଟି ଲୟ କାରଣ, ଅଟେ ମୋର ନିଦ୍ରା ଜାଗରଣ । ୧୪

ମୁହିଁ ଭୋଜ୍ୟ ଭୋକ୍ତା ମୁହିଁ ଧ୍ୟେୟ ଧ୍ୟାତା ମୁଁ ଅଟେ ଜଡ଼ ଚେତନ,
ମୁହିଁ ମିତ୍ର ଅରି ହର୍ତ୍ତା ରକ୍ଷାକାରୀ ମୁଁ ପିତା ମାତା ନନ୍ଦନ;
ଯେତେ ବିଭେଦଜ୍ଞାନ, ସବୁ ମୋର ମାୟାକାର୍ଯ୍ୟମାନ । ୧୫

ନାହିଁ ଦୁଷ୍ଟ ଶିଷ୍ଟ ଉତ୍କୃଷ୍ଟ ନିକୃଷ୍ଟ ଏ ଜଗତେ ମିତ୍ର ଅରି,
ମୁଁ ନିଜ ସଙ୍ଗରେ ଲୀଳାରଙ୍ଗ ରଚେଁ ଜଗତରୂପକୁ ଧରି;
ତେଣୁ ବିଭେଦଜ୍ଞାନ, ଅଟେ ମୋ ଲୀଳାର ଉପାଦାନ । ୧୬

ନାହିଁ ମୋର ସ୍ନେହ କାହିଁରେ ଜଗତେ ସ୍ନେହରୁ ମୋହ ସମ୍ଭବେ,
ସ୍ନେହରେ ମଜ୍ଜି ଭୁଞ୍ଜନ୍ତି ଅପାର ଯନ୍ତ୍ରଣା ଭବେ ମାନବେ;
ସ୍ନେହେ ମଜ୍ଜି ସିନା, ବ୍ରଜ ସହିବ କଷ୍ଟ ମୋ ବିନା ।" ୧୭

ଏହିରୂପେ ହରି ଭାଳି ଯୋଗଧ୍ୟାନେ ଅପିଣ ବ୍ରଜକୁମାରେ,
ଉଲ୍ଲେଇ ପ୍ରବେଶ ଖୋଜି ଖୋଜି ବନେ ପୀତବାସ ଯେଉଁଠାରେ,
ଧୀରେ କହିଲେ ବାଣୀ, "କାହିଁ ଲୁଚି ବସ ବେଣୁପାଣି ? ୧୮

ଲଜ୍ଜା ପାଇ କି ହେ ! ବସିଛ ଏଠାରେ ବାଗୁହରେ ହାରି ଯାଇ ?
ଗୃହ ପୁଣି ଦେବୁଁ ଜଣାଇ ତୁମ୍ଭଙ୍କୁ ଦୁଃଖ ନ କର କହ୍ନାଇ;
ଭାଇ ! କଳାବଦନ, ବିନା ହେଉଛୁ ଅଧୀର ମନ । ୧୯

କହ୍ନାଇ ! ତୁମ୍ଭେ ତ ଇଚ୍ଛାରେ ହାରୁଛ ଅମ୍ଭେ କି ଯାଅନ୍ତୁ ବଳି,
ଅଳପରେ ଷଣ୍ଢ ଅଘ ବଧ କଲ କାଳିୟକୁ ଦେଲ ଦଳି ।"
ଶୁଣି ସଖାଙ୍କ ବାଣୀ, ଯୋଗ ତେଜିଲେ ଜଳଜପାଣି । ୨୦

ସଖାଙ୍କ ବଚନ ଶୁଣି ହସି ହସି କହନ୍ତି ନନ୍ଦଦୁଲାଳ,
"ମୋଠାରୁ ଅଧିକ ବଳାଢ୍ୟ ଯେତେକ ମୋ ସଖା ବରଜବାଳ;
ତାଙ୍କୁ ନ ପାରେ ଜିଣି, ନେଇଛନ୍ତି ସେ ମୋ ବଳ କିଣି । ୨୧

ଅଜି ନନ୍ଦପୁରେ ପଡ଼ିବ ଦାରୁଣ ବିପଦ ହେ ସଖାଗଣ,
ମଧୁପୁରେ ମୋତେ ନେବା ପାଇଁ କଂସ ଦୂତ କରିଛନ୍ତି ପ୍ରେରଣ,
ତାହା ଯମୁନାକୂଳେ, ଭାବୁଥିଲି ଏକା ମନାକୁଳେ । ୨୨

ଗୃହ ଅଜି ସର୍ବେ ବୃନ୍ଦାବନ ତେଜି ଗୃହକୁ ଯିବା ବହନ,
ପାଇ ଏ ବାରତା ମୋର ପିତା ମାତା କରୁଥିବେ ତ କ୍ରନ୍ଦନ;"
ହରି କହି ଏମନ୍ତ, ହେଲେ ସଦନକୁ ପ୍ରତ୍ୟାଗତ । ୨୩

ବିରସବଦନେ ନନ୍ଦର ସଦନେ ପ୍ରବେଶିଣ ମାୟାଧର,
ପୁରବାସୀ ସଙ୍ଗେ ପେଲି ମାୟାରଙ୍ଗେ ଶୋକରେ ହେଲେ କାତର;
ବୁଧେ କର ସ୍ମରଣ, ଚିନ୍ତାମଣି ଶ୍ରୀଚିନ୍ତାମଣି ଚରଣ । ୨୦

---

# ତୃତୀୟ ଛାନ୍ଦ

ରାଗ—କାମୋଦୀ *

## କୃଷ୍ଣଙ୍କର ବ୍ରଜରୁ ବିଦାୟ ଗ୍ରହଣ

ହୋଇ ଅତି ତତ୍ପର ସଜାଡ଼ି ରଥବର ଅକ୍ରୂର ନନ୍ଦଙ୍କୁ ଡ଼କାଇ
କହିଲ, "ହାରି ଫନ୍ଦି କରି ମୋତେ ଅବଜ୍ଞା ରାଜାଜ୍ଞା ଦେଇଛି ପଠାଇ
ହେ ବ୍ରଜପତି !
କୁପିତ ହେଲେ ନୃପବର, ସରବ ସମ୍ପଦ ତୁମ୍ଭର
ଛାଡ଼ି ମନରୁ ଦମ୍ଭ ଦୁଇ ପୁତ୍ରଙ୍କୁ ଆମ୍ଭ ସଙ୍ଗରେ ପଠାଅ ସତ୍ୱର
ହେ ବ୍ରଜପତି !" ୧

କହେ କାତରେ ନନ୍ଦ "ବୃଥା କରୁଛ ଦ୍ୱନ୍ଦ୍ୱ ଗୋବିନ୍ଦ ଦେବିନ ଯିବାପାଇଁ,
ଥାଉଁ ଶତେ ବିବେକ ସ୍ୱପ୍ରାଣ କେଉଁ ଲୋକ ଘାତକଙ୍କରେ ସମର୍ପିବ
ହେ କଂସଦୂତ !
ଶ୍ୟାମ ମୋ ସମ୍ପଦ ଜୀବନ, କଂସ ତା କରୁଛି ହରଣ,
ଅତି କିପାଁ ମୋ ମତି କରିବ କଂସେ ହିତ ଏବେ ମୋ ସୁଗତି ଶମନ
ହେ କଂସଦୂତ ! ୨

କିପାଁଇ ନୃପବର ବାଳସୁତଙ୍କୁ ମୋର ଡ଼ଗର ପେଷିଛି ନେବାକୁ,
ମୁଁ ଅଟେ ଗୋପରଣ ମୋଠାକୁ ନିମନ୍ତ୍ରଣ ପ୍ରେରଣ ନ କଲେ ଯିବାକୁ
ହେ କଂସଦୂତ !
ମୋ ମନେ ଲାଗଇ ସନ୍ଦେହ, ଅକ୍ରୂର ସତ୍ୟ କରି କହ,
କପଟ ପାଞ୍ଚ କରି କଂସ ଅବା କରୁଛି ମୋ ସୁତେ ଅଜ୍ଞାନ ନିଗ୍ରହ
ହେ କଂସଦୂତ ! ୩

ଦିନେ କପଟୀ କଂସ ପଠାଇଲା ଆଦେଶ ସାରସ ଶତପତ୍ର ଲାଗି,
କହୁଁ ହ୍ରଦେ ଚୟନ ପଦ୍ମ ପଦ୍ମନୟନ ଦଂଶନ କଲା ମହାଭୋଗୀ
ହେ କଂସଦୂତ !

---

* ଉତ୍ସବକଲ୍ଲୋଳ "କୃଷ୍ଣ କଂସନଗର ଯିବା ଶୁଣି କାତର" ସ୍ୱରେ

ଧର୍ମ ରଖିଲ କହ୍ନା ପ୍ରାଣ, ନାହିଁ କଂସର ଧର୍ମଜ୍ଞାନ,
ଦେଖି ମୋର କି ଦୋଷ ମୋଠାରେ ସଦା ରୋଷ ପ୍ରକାଶ କରେ କଂସରାଣ
ହେ କଂସଦୂତ ! ୪

ବ୍ରଜଧାମ-ନୟନ ଅଟେ ପଦ୍ମନୟନ ଶୟନ ସ୍ୱପନେ ଯାହାକୁ,
କ୍ଷଣେହେଁ ଚକ୍ଷୁ ମୋର ତଳେ ନ କରେ ଦୂର କେମନ୍ତେ ଛାଡ଼ିବି ତାହାକୁ
ହେ କଂସଦୂତ !
ଯାଉ ପଛକେ ମୋ ଜୀବନ, ଯାଉ ମୋ ରାଜ୍ୟ ମାନ ଧନ,
ନ ଦେବ ଶ୍ୟାମେ ଛାଡ଼ି ଯାଅ ତୁମ୍ଭେ ବାହୁଡ଼ି ସତ୍ୱର ମଥୁରା ଭୁବନ
ହେ କଂସଦୂତ ! ୫ ।

ଯଦି ଇଚ୍ଛା ତୁମ୍ଭର ଘେନିଯିବ ନିଜର ମୋର ଏ କୁମର ଯୁଗଳ,
ପ୍ରଥମେ ଅସି ଘେନି ନାଶ ଗୋପ ଗୋପିନୀ ବ୍ରଜରେ ଲଗାଅ ଅନଳ

ହେ କଂସଦୂତ !
ପଛରେ ମୋର କୃଷ୍ଣ ରାମ, ଘେନି ମଥୁରାପୁରେ ଗମ,
ମୋର ଗଲା କରତ ବନାଣି ଯଶୋମତୀ ଅରଜ ମୁଖ୍ୟାତ ପରମ
ହେ କଂସଦୂତ ! ୬ ।
ଶୁଣି ନନ୍ଦର କଥା ଅକ୍ରୁର ପାଇ ବ୍ୟଥା ବିଷଣ୍ଣବଦନେ ଅନାଇ,
କହିଲ, "ବୃଥା ନନ୍ଦ ହେଉଛ ନିରାନନ୍ଦ ଗୋବିନ୍ଦେ ପଠାଇବା ପାଇଁ
ହେ ବ୍ରଜପତି !
ରାଜସଭାରେ ବସି କର, କହ୍ନାଇ ଶିଖିବେ [illegible],
ଗୋପରେ ପ୍ରତିଦିନେ ଭ୍ରମିଲେ ବନେ ବନେ ଉନ୍ନତି ଲଭିବେ କିପରି
ହେ ବ୍ରଜପତି ! ୭

ଶିକ୍ଷାବିହୀନ ଜନ ସିନା ପଶୁ ସମାନ ବିଷାଣ ପୁଚ୍ଛହୀନ ମାତ୍ର,
ଅବିବେକ ସେ ଜନ ନ ହୁଅଇ ପତନ ସନ୍ତାନ ଶିକ୍ଷାରେ ଯା ନେତ୍ର

ହେ ବ୍ରଜପତି !

ଅତ୍ୟନ୍ତ ସ୍ନେହ ଅନୁରତ, ତାଡ଼ନେ ଗୁଣ ଅପ୍ରମିତ,
ବାଲ୍ୟେ ଗଲେ ବିଦେଶ ବଢ଼େ ଜ୍ଞାନ ବିଶେଷ ସାହସ ହୁଅଇ ବର୍ଦ୍ଧିତ,
ହେ ବ୍ରଜପତି ! ୮

ନାନା ସ୍ଥାନେ ଅଟନ ପଣ୍ଡିତେ ସମ୍ମିଳନ ପଠନ ନରବର ସଙ୍ଗ,
କରେ ଗୃହଦୁଷ୍ଟ ଜାତ କରେ ଜ୍ଞାନ ବର୍ଦ୍ଧିତ ମାର୍ଜିତ କରଇ ପ୍ରତିଭା
ହେ ବ୍ରଜପତି !

ବନରେ ଭ୍ରମି ନିତ ନିତ ନିର୍ବୋଧ ଗୋପାଳେ ହୁଅନ୍ତି,
ଏଣୁଛି ଗୋପକୁଳ ତେଣୁ ହୋଇ ସମୂଳ ଲଭଇ ସମାଜ ଦୁର୍ଗତି;
ହେ ବ୍ରଜପତି ! ୯

ତୁମ୍ଭ ବେନି ନନ୍ଦନ ଘେନି ଅସ ବହନ ଶୋଭନଯୋଗକୁ ବରୁର ।
ଲଙ୍ଘି ସବୁ ପ୍ରମାଦ ଲଭି ରାଜପ୍ରସାଦ ପ୍ରମୋଦେ ଅସିବେ ସେ ଫେରି
ହେ ବ୍ରଜପତି !

ଶରଧା ବଳାନ୍ତି କଂସର, ଦେଖିବା ଲାଗି ଦାମୋଦର,
କଲେ କଂସରେ ପ୍ରୀତି ଦୂର ହେବ ଦୁର୍ଗତି ସମ୍ପତ୍ତି ବଢ଼ିବ ତୁମ୍ଭର;
ହେ ବ୍ରଜପତି !" ୧୦

ସାନ୍ତ୍ୱନା ଉପଦେଶ ପାଇଣ ଗୋକୁଳେଶ ପ୍ରବେଶ କରି ଅନ୍ତଃପୁରେ ।
ଯଶୋଦାକୁ ଡକାଇ କହିଲେ ଗୋପସାଇଁ, "କହ୍ନାଇ ଯିବ ମଧୁପୁରେ
ଗୋ ପ୍ରିୟତମେ !

ତାହାକୁ ତ୍ୱରା ସଜ କର, ଅଧୀର ହେଉଛନ୍ତି ଡ଼ଗର,
ଲଙ୍ଘିଲେ ରାଜାଦେଶ ଘଟିବ ସର୍ବନାଶ ବିଧ୍ୱଂସ ଘଟିବ ଗୋପର,
ଗୋ ପ୍ରିୟତମେ ! ୧୧

ଦେଖି ଧନୁ-ଉତ୍ସବ ଗୁରୁ ଦନେ କେଶବ ଅସିବ ଗୋପକୁ ବାହୁଡ଼ି,
ହେବ କଂସ ହରଷ ପାଇବ ପୀତବାସ ପ୍ରଯଶ ଶିରେ ବାନ୍ଧି ଶାଢ଼ୀ
ଗୋ ପ୍ରିୟତମେ !

କୃଷ୍ଣକୁ କୃପା କରି କଂସ, ଦେବ ଅନେକ ନଗ୍ର ଦେଶ,
ରାଜସଭା ପ୍ରବେଶେ ହେବ ଶ୍ୟାମ ବିଶେଷେ ଚତୁର ଲଭି ଉପଦେଶ
ଗୋ ପ୍ରିୟତମେ ! ୧୨

ଯଦି ଅକ୍ରୂର ତନୁଜେ ନ ଛାଡ଼ିବା ସହଜେ ବରଜେ ରଖିବା ବଳରେ,
ନୃପବଳରେ ବଳୀ ଡଗର କରି ଛଳି ହାବେଳି ଛାଡ଼ି* ଗୋକୁଳରେ
ଗୋ ପ୍ରିୟତମେ !

ରାମ ଶ୍ୟାମଙ୍କୁ ଯିବ ଘେନି, କୋପିବ କଂସ ଏହା ଶୁଣି,
ତା କ୍ରୋଧ ଅତି ଖର ସୁତଙ୍କୁ ଅବା ମୋର ଖଡ଼ଗେ ପକାଇବ ହାଣି,
ଗୋ ପ୍ରିୟତମେ ! ୧୩

ନନ୍ଦରାଜା ବଚନ ଇରମ୍ମଦ ପତନ ସମାନ ଯଶୋଦା ଶ୍ରୁତିରେ
ପଡ଼ୁଁ ବ୍ରଜମହିଷୀ ତଳେ ପଡ଼ିଲ ବସି ନିବେଶି ମୁଷ୍ଟିକ ଛାତିରେ
ହେ ବୁଧଜନ !

ନୀରବ ଘୋର ନୈଶବାର ଅର୍ଦ୍ଧିଲ ମଧ୍ୟ ନେହୁଁ ତ୍ୱର ,
ଶୂନ୍ୟ ହେଲକ ମତି ନିସ୍ତ୍ରିପ୍ତ ନେଣ ଶ୍ରୁତି ମୂରତି ମଣିମୟୁ ପରି ହେ,
ବୁଧଜନ ! ୧୪

ହେଉଁ ଶ୍ୟାମ ବିନାଶ ଚେତା ହେଲ ପ୍ରବେଶ ମାନସ ପୂର୍ଣ୍ଣ ହେଲ ଭାବେ,
ଶୋକ-ଘୃଣା-ବିଷାଦ-ବୈରାଗ୍ୟ ଦମ୍ଭ-କ୍ରୋଧ-ବାରିଦ ସଞ୍ଚରି ନୀରବେ
ହେ ବୁଧଜନ !

ଯଶୋଦା ମାନସ-ଅମ୍ବରେ ଘୋଟିଲେ ଅତି ଭୟଙ୍କରେ,
ହେଲ ବାତ୍ୟା ପ୍ରକାଶ ଘନ ଦୀର୍ଘ ନିଶ୍ୱାସ ଶୋକାଶ୍ରୁ ଘନଧାରା ଗିରେ,
ହେ ବୁଧଜନ ! ୧୫

ଉଠି ବସି ମଉନେ ଯଶୋଦା ଭାଳେ ମନେ କି ଭାଳେ ଜାଣି ନ ପାରଇ,
ଉଛାରିବାକୁ ବଚ ମନରେ କରେ ପାଞ୍ଚ କହିବ କିସ ନ ଜାଣଇ
ହେ ବୁଧଜନ !

* ଅର୍ଥାତ୍ ସମସ୍ତଙ୍କୁ ଅସ୍ଥିର କରି

ଶୋକରେ ରୁଦ୍ଧ କଣ୍ଠଦେଶ ନ ଫିଟେ କଲେହେଁ ପ୍ରୟାସ,
ପ୍ରବଳ ସ୍ରୋତବାରି ସେତୁ ଭାଙ୍ଗିଲା ପରି ହେଲାକ ଶୋକର ପ୍ରକାଶ
ହେ ବୁଧଜନ ! ୧୬

କାନ୍ଦ ବ୍ୟାକୁଳ ମନେ ଗଦଗଦ ବଚନେ ବଦନେ ବାସାଞ୍ଚଳ ଦେଇ,
କହିଲା ନନ୍ଦରାଣୀ "ଏଡ଼େ କଠିନ ବାଣୀ ମୋଠାରେ କହୁଛ କପାଇଁ
ହେ ପ୍ରାଣେଶ୍ୱର !

ପାଷାଣେ ହୃଦୟ ତୁମ୍ଭର, ଅଛୁ କି ରଚି ବେଦବର,
ହେଉଅଛ ଉଦ୍ୟତ ମୋ କେନ ବାଳସୁତ ଦେବାକୁ ଦୁଷ୍ଟ କଂସ କର
ହେ ପ୍ରାଣେଶ୍ୱର ! ୧୭

କଠିନ ବ୍ରତ ଫଳେ କେନ ସୁତଙ୍କୁ କୋଳେ କପାଳେ ଥିବାରୁ ପାଇଲି,
ଯାହାଙ୍କୁ କୋଳେ ଘେନି ବଞ୍ଚେ ଦିବାରଜନୀ ଯା ଘେନି ଦୁଃଖ ପାଶୋରିଲି
ହେ ପ୍ରାଣେଶ୍ୱର !

ଯାହାଙ୍କ ମୁଖ କମଳାସ୍ୟ, ଦେଖି ଉଳ୍ଲୁଲେ ମୋ ହୃଦୟ,
କେମନ୍ତେ ଅଣ ତୁଣ୍ଡେ ବଜ୍ର ମାରି ମୋ ମୁଣ୍ଡେ ଦେବାକୁ ତାହାଙ୍କୁ ବିଦାୟ
ହେ ପ୍ରାଣେଶ୍ୱର ! ୧୮

ପାପୀ କଂସଡ଼ଗର ଭୃତ୍ୟ ଅଟେ ଅକ୍ରୂର ଭୃତ୍ୟର ଗୁରୁଶ୍ରୀ ପ୍ରକାଶେ ।
ଭଣ୍ଡବଚନ କହି ତୁମ୍ଭ ମନକୁ ମୋହି ନେବ କି ମୋର କଲାଶଶୀ
ହେ ପ୍ରାଣେଶ୍ୱର !

ଯାବତ ଥିବ ମୋ ଜୀବନ, ଛାଡ଼ି ନ ଦେବି ଶ୍ୟାମଧନ,
ଅସି କ୍ରୂର ଅକ୍ରୂର କରୁ ମୋତେ ସଂହାର ଦେଖାଉ ତାର ବଡ଼ପଣ
ହେ ପ୍ରାଣେଶ୍ୱର ! ୧୯

ତୁମ୍ଭେ ରାଜା ଗୋପର କପାଁ ମଥୁରାନଗର ଅକ୍ରୂର ସଙ୍ଗେ ନ ଯାଉଛ,
ନାହିଁ ତୁମ୍ଭ ସାହସ ଅଚ ଭୀରୁ ସଦୃଶ ବ୍ରଜେଶ କପାଁ ବୋଲାଉଛ,
ହେ ପ୍ରାଣେଶ୍ୱର !

ଦୁଷ୍ଟବାଧନେ କଂସେ ଦେଲ, ହୋଇବ ପର୍ଣ୍ଣ ଗୋପସାଇଁ,
କଂସର ନିମନ୍ତ୍ରଣ କର ଶିରେ ଧାରଣ ଅସ୍ତ୍ରାଣ କର ତୁମ୍ଭ ହୋଇ
ହେ ପ୍ରାଣେଶ୍ୱର ! ୨୦

ଦୁଷ୍ଟ ରାଜଦ୍ୱାରର ମଧ ଶଠ ଅକ୍ରୂର ସଙ୍ଗର ଧରୁ ଗୋପଦାଣ୍ଡ,
ନାଚୁଥିବା ମୋର ମୁଣ୍ଡ କରୁ ସେ ଖଣ୍ଡ ଖଣ୍ଡ ଖଡ଼ଗ ପ୍ରହାର ପ୍ରଚଣ୍ଡ,
ହେ ପ୍ରାଣେଶ୍ୱର !

ମୋର ଗରସ୍ଥ ରଷ୍ଟ କଂସ, ଅଜ ସେ କରୁ ମୋତେ ଧ୍ୱଂସ,
କରୁ ମୋତେ ବନ୍ଧନ ବେଗେ ଅସି ଶମନ ମୋ ଶିରେ ବରଷ କୁଳିଶ
ହେ ବେଦବର ! ୨୧

ଦୁଃଖୀ ଜନର ଧନ କରିବା ସଂରକ୍ଷଣ ଅଟଇ ଧର୍ମ ନରେଶଙ୍କ,
ହୋଇ ନିଜେ ବ୍ରଜେଶ ନିଜ ଧର୍ମକୁ ନାଶ ପ୍ରାଣେଶ କି ବଳରେ କର
ହେ ! ଏ ବ୍ରଜରେ

ଅଟଇ ମୁଁ ଅତି ଦୁଃଖିନୀ, ମୋ ଧନ ମାନ ସୁତ ବେଣି,
ତାଙ୍କ ଉପର କରେ ମୋ ଧନେ କି ବଳରେ ଦେଉଛ ତୁମ୍ଭେ ତ ସୁଜ୍ଞାନୀ
ହେ ପ୍ରାଣେଶ୍ୱର ! ୨୨

ମୋର କି କାର୍ଯ୍ୟ ଧନେ ରାଜସମ୍ପଦ ମାନେ ଜୀବନେ ମୋର କାର୍ଯ୍ୟ ନାହିଁ
କାହ୍ନୁ ମୋର ସକଳ ଧନ ମାନ ସମ୍ବଳ ଜୀବନ ମିନ ବନ୍ଧୁ ଭାଇ
ହେ ପ୍ରାଣେଶ୍ୱର !

ଯେତେ କାଳ ଏ ଭବେ ଥିବ, କେମନ୍ତେ ତାହାକୁ ତେଜିବ,
ତାର ଚନ୍ଦ୍ରବଦନ ସଦା କର ଦର୍ଶନ ଜୀବନ ସାର୍ଥକ କରିବ
ହେ ପ୍ରାଣେଶ୍ୱର ! ୨୩

କୋଟି-କନ୍ଦର୍ପଜିଣା ରୂପେ ଅଟେ ମୋ କହ୍ନା ତାହାକୁ ଭୂଷଣ ବସନେ
ନିତ କର ଭୂଷିତ ବାନ୍ଧିବ ତାର ମାଥ ଚର୍ଚ୍ଚିବ ଲଲାଟ ଚନ୍ଦନେ
ହେ ପ୍ରାଣେଶ୍ୱର !

କାହ୍ନୁ ମୋ ସଂସାର ବ୍ୟାପାର, କାହ୍ନୁ ମୋ ଜୀବନ ଅଧାର,
ତାହାଙ୍କୁ ଘେନି କୋଳେ ତାହାଙ୍କୁ ଦେଖି ଡୋଳେ କାଟିବ ଜୀବନ ମୋହର
ହେ ପ୍ରାଣେଶ୍ୱର ! ୨୪

କଂସରେ ମିତ୍ରପଣ କରି ଗୋପରେ ରାଣୀ ହୋଇଣ ସୁଖେ ଗୃହେ ରହ
ନ ଲୋଡେଁ ମୁଁ ସମ୍ପଦ ନ ଲୋଡେଁ ରାଜ୍ଞୀପଦ ନ ଲୋଡେଁ ଧବଳିତ ଗୃହ
ହେ ପ୍ରାଣେଶ୍ୱର !

ମୋର କାହ୍ନୁକୁ ଘେନି କୋଳେ, ଭ୍ରମିବି ଅବନୀ ମଣ୍ଡଳେ,
ମୋ ଶ୍ରେୟ ହୀନାବାସ ମୋ ଶ୍ରେୟ ଛିନ୍ନବାସ ମୋ ଶ୍ରେୟ ଭିକ୍ଷା ଅରଣ୍ୟାନୀ
ହେ ପ୍ରାଣେଶ୍ୱର ! ୨୫

ଅଜ୍ଞା ହେ ଗୋପରାୟ ଦିଅ ଗୃହୁଁ ବିଦାୟ ସଦୟ ହୋଇ ଅଧୀନୀକି,
ନ ନେବ ଘରୁ କିଛୁ ସତ୍ୟ କରି କହୁଛି କେବଳ ମୋ ବଂଶୀପାଣିଙ୍କି
ହେ ପ୍ରାଣେଶ୍ୱର !

ପଛକେ ମୋ ବେନି ନନ୍ଦନ, ଭିକ୍ଷାନ୍ନେ ପୋଷିବେ ଜୀବନ,
ତୁମ୍ଭେ ପ୍ରିୟ କଂସର ଅଜ୍ଞା ଗମନ କର ଅକ୍ରୂର ସଙ୍ଗରେ ବହନ
ହେ ପ୍ରାଣେଶ୍ୱର !" ୨୬

ମଉନେ ନନ୍ଦ ରହୁ ଯଶୋଦା ମୁଖ ଗୃହୁଁ ନୀରବେ ଅଶ୍ରୁଧାର ଢାଳେ
ମାତା ବିଳାପଧ୍ୱନି ରଥାଙ୍ଗପାଣି ଶୁଣି ସେଠାରେ ପ୍ରବେଶେ ଭକ୍ତପାଳ
ହେ ବୁଧଜନ !

ବସିଲେ ଜନନୀର କୋଳେ, ନିଜ ନୟନ ନୀରଜଳେ,
ତୋଷାଇ କଳେକ୍ଷଣେ କହିଲେ "କି କାରଣ କ୍ରନ୍ଦନ କରୁଛ ଆକୁଳେ
ଗୋ ସ୍ନେହମୟି !" ୨୭

କରି ଶ୍ୟାମେ ଦର୍ଶନ ଶୁଣି ଶ୍ୟାମ ବଚନ, ଦ୍ୱିଗୁଣ ଯଶୋଦା ଶୋକିନୀ
ଗଣ୍ଡେ ଦେଇ ଚୁମ୍ବନ ପୋଛୁ ଶ୍ୟାମ ନୟନ ଦେଇଣ ଜାନୁକରେ ପାଣି
ସେ ସ୍ନେହଭରେ ,

କହିଲ କାନ୍ଦଣା କହ୍ନାଇଁ, ପୁଣି କହିଲ ଚୁମ୍ବ ଦେଇ,
“ଅରେ ମୋ ପ୍ରାଣଧନ! କପାଁ କରୁ କନ୍ଦନ ନୟନ ଲୋତକେ ଭସାଇ
ରେ ଦୁଃଖୀଧନ !” ୨୮

ଶୁଣି ମାତା ବଚନ କାନ୍ଦ କଞ୍ଜନୟନ “କହନ୍ତ ମାତ ! କାନ୍ଦ କପାଁ,
କହ କିପାଁ ଜନକ ବସି କରନ୍ତି ଶୋକ କି ଦୁଃଖ କହ କର କୃପା
ଗୋ ସ୍ନେହମୟି !
ଦେଖି ତୁମ୍ଭର ନେତ୍ରେ ନୀର, ହେଉଛି ମୋ ମନ ଅସ୍ଥିର,
ଅଧୀର ହୁଏ ମନ ଦେଖି ତୁମ୍ଭ କନ୍ଦନ ଶୁଣିଣ ବିଳାପ ତୁମ୍ଭର
ଗୋ ସ୍ନେହମୟି ! ୨୯

ଶୁଣି ନନ୍ଦନ ବାଣୀ କାନ୍ଦ ବରଜରାଣୀ କହିଲେ ଗଦଗଦ ସ୍ୱରେ,
“ଦଧି ଲବଣୀ ସର ଅଛି ଭୋଜନ କର ସତ୍ୱର ବସି ମୋ କୋଳରେ
ରେ ଘନଶ୍ୟାମ !

ରାମକୁ ଡାକି ଆଣ ଯାଇ, ଭୋଜନ କର ବେନି ଭାଇ,
ବନରେ ଭ୍ରମି ଭ୍ରମି ହୋଇଛ ଅତି ଶ୍ରମୀ ସବଳ ହୁଅ ସର ଖାଇ
ରେ ନୀଳମଣି ! ୩୦

ବହୁଛି ବହୁ ଝାଳ ଛିଡ଼ିଛି ବନମାଳ ସକଳ ଧୂଳିରେ ଶରୀର,
ମୟୂରପୁଚ୍ଛ ଚୂଳ ହୋଇ ଅଛି ଶିଥିଳ କି ଖେଳ ଖେଳିଲ ବନର
ରେ ନନ୍ଦଧନ !

ମୋ ବଳରାମ ଅଛି କାହିଁ, ତାହାକୁ ଦେଖି ଆସ ଯାଇ,
କେଉଁଠି ଭୋଜନ କରି ଯିବ ଘରୁ ବାହାରି ଭୋଜନ ସାରି ବେନି ଭାଇ
ରେ କଳାଶଶି !” ୩୧

ଶୁଣି ଏମନ୍ତ ବାଣୀ କାନ୍ଦିଲ ଉଚ୍ଚେ ରାଣୀ କାନ୍ଦିଲ ନନ୍ଦ ଶୋକାକୁଳେ
ସେକ୍ଷଣେ ତହିଁ ମିଳି ଉଚ୍ଚେ କାନ୍ଦିଲେ ହଳୀ କାନ୍ଦିଲେ କୃଷ୍ଣ ମାତା କୋଳେ
ହେ ବୁଧଜନ !

ନନ୍ଦର ଏପରେ ଦାସ ଦାସୀ     କାନ୍ଦଲେ ଉଚ୍ଚେ ଉଚ୍ଚଁ ଆସି,
ଢାଳ ନେଇଁ ଲୋତକ ଅର୍ପଣ କଲେ ଶୋକ ଯେତେକ ନନ୍ଦପୁରବାସୀ,
ହେ ବୁଧଜନ ! ୩୨

ନନ୍ଦନ କୋଳାହଳ   କଲା ପୁର ସଘୋଳ   ଅକ୍ରୂର ରଥର ଗମନେ
ଅନ୍ତଃପୁରେ ପ୍ରବେଶି   ଦସ୍ୟାସ୍ୱବ ପ୍ରକାଶି   ଭାଷିଲା ତନୟ ବଚନେ
ହେ ବୁଧଜନ !

"ନ କର ଚିନ୍ତା ଯଶୋମତି !     ବୃଥାରେ କାହିଁ କର ଭୀତ,
କଂସେ ଦର୍ଶନ କରି ସୁଖେ ଆସିବେ ଫେରି କଂସାର ଲଭିଣ ସୁଖ୍ୟାତ
ଗୋ ବ୍ରଜେଶ୍ୱରୀ ! ୩୩

ମଥୁରା ପୁରେ ଆସି   ଲୁଣ୍ଠ କିମ୍ପୁର ବାସୀ   ପ୍ରକାଶି ନିଜ ରାଜଭକ୍ତି
କହ ତୁମ୍ଭେ କିପାଇଁ  ହୋଇବ ରାଜଦ୍ରୋହୀ  କଂସରେ କର ଅପୀରତି
ଗୋ ବ୍ରଜେଶ୍ୱର !

ଦେଖିଲେ କାହ୍ନୁଙ୍କୁ ତୁମ୍ଭର     ସ୍ୱର୍ଗ ଲଭିବ ନୃପବର,
ଦେବ ସେ ଉଚ୍ଚପଦ  ସହ ରାଜ ପ୍ରସାଦ ସମ୍ପଦ  ବଢ଼ିବ ତୁମ୍ଭର ଗୋ,
ନନ୍ଦରାଣି ! ୩୪

ଫେରାଇ ଦେଲେ ରଥ   ହେବ କଂସ କୁପିତ   ନିଶ୍ଚିତ ଘଟିବ ପ୍ରମାଦ
ଗୋପ ଗୋପୀମାନେ ଯେତେ ମରିବେ କଂସ ହସ୍ତେ ତ୍ୱରିତେ ଯିବ ନନ୍ଦ ପଦ
ଗୋ ବ୍ରଜେଶ୍ୱରୀ !

ନ ଥିବ ଅଉ ଗୋପପୁର     ରହିବେ କାହ୍ନୁ କାରାଗାର,
ଅଥବା ଖଡ୍ଗ ଘେନି ଦାରୁଣ-ନୃପମଣି ହାଣିବେ ନନ୍ଦକାହ୍ନୁ-ଶିର କି ଗୋ,
ବ୍ରଜେଶ୍ୱର ! ୩୫

କାହିଁ ଯଶୋଦା ନନ୍ଦ   ଭଲ କଥାକୁ ମନ୍ଦ   କରୁଛ ଅବିବେକ ପଣେ
ଲଙ୍ଘିଲେ ରାଜାଦେଶ   ଘଟିବ ସର୍ବନାଶ  ଭବିଷ୍ୟ ଭଲ ଦେଖ ମନେ
ଗୋ ବ୍ରଜେଶ୍ୱର !

ରଥ ପେଷିଛୁ ନରପତି, ଏଥୁଁ ବଳି କି ଅଛି ଖ୍ୟାତି,
ଏମନ୍ତ ଗଉରବ ନ ଲଭିଲ ବାସବ ଶତକ ଯାଗ ସ୍ୱର୍ଗଭୂତ
ଗୋ ବ୍ରଜେଶ୍ୱରୀ ! ୩୬

ସୁଖେ ବସାଇ ରଥେ ଘେନି ମୁଁ ଯିବ ପଥେ ଅଚ୍ୟୁତେ ପରମ ଯତନେ,
କଂସାପୁରେ ଭେଟାଇ ଧନୁସ୍ତବ ଦେଖାଇ ପଠାଇଦେବ ଶ୍ରୀବଦନେ
ଗୋ ବ୍ରଜେଶ୍ୱରୀ !

ଭାବନା ଦିଅ ଦୂର କର, ଦେଖନ୍ତୁ ଶ୍ୟାମ ମଧୁପୁରୀ,
ନ ପେଷିଣ ବିଦେଶେ ରଖିଲେ ସଦା ପାଶେ ହେବେ ସେ ଅଧମ କଂସାରି
ଗୋ ବ୍ରଜେଶ୍ୱରୀ !” ୩୭

“କଂସାପୁର ନଗର ଅଟ ତୁମ୍ଭେ ଅକ୍ରୂର, ମୋହର ତେଣୁ ଅବିଶ୍ୱାସ”
କହୁଁ ବ୍ରଜମହିଷୀ କେତେକ ପ୍ରତିବେଶୀ ଭାଷିଲେ ଦେଇଣ ଆଶ୍ୱାସ,
ହେ ବୁଧଜନ !

“କଂସ ନଗର ଭଦ୍ର ଅତି ନ କର ଶଙ୍କି । ମନେ ଭୀତି,
ସ୍ୱଚ୍ଛନ୍ଦେ ଅନାତଙ୍ଗେ ପଠାଅ ତାଙ୍କ ସଙ୍ଗେ ଶ୍ରୀରଙ୍ଗେ ଶୁଭକାଳ ଚିନ୍ତି
ଗୋ ବ୍ରଜେଶ୍ୱରୀ !” ୩୮

ଗୋପକୁଳ ନାୟକ ସମ୍ଭାଳି ଗୁରୁଶୋକ ଗଣକ ଡକାଇ ହରଷେ,
କହିଲେ, “ମଧୁଧାମ ଯିବେ ମୋ ଶ୍ୟାମ ରାମ ଉତ୍ତମ ଲଗ୍ନର ପ୍ରବେଶେ,
ହେ ସୁଗଣକ !”

ନନ୍ଦ ବଚନେ ଧୀରମତି କହିଲା ଗଣି, “ଶୁଭ ଅତି,
ଅଟେ କାଲି ପ୍ରଭାତ ଶୋଭନ ଯୋଗଯୁତ ଉଚ୍ଚସ୍ଥ ଲଗ୍ନେ ଭୃଗୁପତି
ହେ ବ୍ରଜପତି !” ୩୯

ଗୋପୀନେତ୍ର-ଚାତକ— ନବୀନ-ବଳାହକ ଜନକ ଅନୁମତି ପାଇ
ମଣ୍ଡିଲେ ସେହିକ୍ଷଣି ପାଦେ ବ୍ରଜ ସରଣି ମେଲଣି ବ୍ରଜୁଁ ନେବାପାଇଁ
ହେ ବୁଧଜନ !

ଗଡ଼ରେ ମୃଗରାଜଠାଣି — ଜାଣି ଗମିଲେ ଚକ୍ରପାଣି,
ପୃଚ୍ଛ ପୁରେ ଗମନ କଲେ ମାଳୀ ଯେସନ ଚମ୍ପକ ତରଇ ନଳିନୀ,
ହେ ବୁଧଜନ ! ୪୦
ଘୋର କଳାପଧ୍ୱନି ହେଲା କ୍ରମଶଃ ଭିନ୍ନ ରଜନୀ ଅଗମନେ ଯଥା
କ୍ରମେ ଦୂର ନଗରେ ଖଗକୁଳ ସଙ୍କୁଳ ଅଚଳ ଚଳେ ତରୁ ଲତା
ହେ ବୁଧଜନ !
ସକଳେ ଶୋକାକୁଳ ମନ — ଗମିଲେ ଯେ ଯାହା ସଦନ,
କାଳିନ୍ଦ୍ରେ ନେଲେ ନିଶି ଚିନ୍ତା ସାଗରେ ଭାସି ସକଳ ଗୋପପୁର ଜନ
ହେ ବୁଧଜନ ! ୪୧
ଅସିଲା ନିଶା ଚର ଯେସନେ ନିଶାଚରୀ ଗ୍ରାସିଲା ବ୍ରଜକୁ ସଭ୍ଭର,
କିରଣ ଅଶ୍ରୁ ଢାଳି ଛାଦିଲେ ତାରାବଳୀ ମିଳିଣ ଶଶୀଙ୍କ ସଙ୍ଗର
ହେ ବୁଧଜନ !
ପଦ ଏକୋନଚତ୍ୱାରିଂଶ — ତୃତୀୟ ଛନ୍ଦ ହେଲା ଶେଷ,
ଚିନ୍ତାମଣି ଚରଣ କର ସଦା ସ୍ମରଣ ହରଣ ହୋଇବ କଲୁଷ
ହେ ବୁଧଜନ ! ୪୨



## ଚତୁର୍ଥ ଛାନ୍ଦ

ରାଗ—ଚିନ୍ତାଦେଶାକ୍ଷ *

## କୃଷ୍ଣଙ୍କର ବିଦାୟ ଗ୍ରହଣ

ରାଧା ମନ୍ଦିରେ ପ୍ରବେଶି ହରି, — ରାଧା କରପଦ୍ମ କରେ ଧରି,
କହନ୍ତି, "କଂସର ଅସିଛି ଡାକର ମୋତେ ନେବାପାଇଁ ମଧୁପୁରୀ
ଗୋ କିଶୋରୀ ! ୧

* ବୈଦେହୀଶ ବିଳାସ "ବୁଧେ ଶୁଣିମା ହେଉ ସୁମତି" ସ୍ୱରେ ।

ଅତି ପ୍ରତାପୀ ମଥୁରାରାଣ, ଧନୁ ଉତ୍ସବ କରି ଉଥାଣ,
ଦାନବ ମାନବ ଯକ୍ଷ ନାଗ ଦେବ ସମସ୍ତଙ୍କୁ କରିଛି ଆହ୍ୱାନ
ଗୋ କିଶୋର ! ୨

ଅଟେ ଅଲଙ୍ଘ୍ୟ ନୃପ ଆଦେଶ , ତାଙ୍କ ରାଜ୍ୟେ କରୁ ଅଛୁଁ ବାସ,
ମୋ ପିତା ସକାଶେ ଶରଧା ବିଶେଷେ ମନେ କରିଅଛନ୍ତି ରାଜା କଂସ
ଗୋ କିଶୋର ! ୩

ନନ୍ଦ ହେଲେଣି ତ ବୃଦ୍ଧ ଅତି , ରାଜକାର୍ଯ୍ୟକୁ ନାହିଁ ଶକତି ,
ହୋଇ ରାଜାଧୀନ ନ କଲେ ସାଧନ ରାଜକାର୍ଯ୍ୟ ଘଟିବ ଦୁର୍ଗତି
ଗୋ କିଶୋର ! ୪

ତୁମ୍ଭ ପ୍ରୀତି ଜୀବନେ ମୁଁ ମୀନ, ତୁମ୍ଭ ପ୍ରୀତି ମୋ ପରମଧନ,
ତୁମ୍ଭ ପ୍ରୀତି ଭିନ୍ନ ନ ଇଚ୍ଛେଁ ମୁଁ ଆନ ତୁମ୍ଭ ପ୍ରୀତି ମୋ ପରମସ୍ଥାନ
ଗୋ କିଶୋର ! ୫

ରାଜା ବଳକୁ ନାହିଁ ତ ବଳ , ଯଦି ନ ଯିବ କଂସ ଭୂପାଳ
କ୍ରୋଧ ବହ୍ନି ମନେ ଗୋପପୁର ଜନେ ଦେବ ଅପାର ଦଣ୍ଡ କରାଳ
ଗୋ କିଶୋର ! ୬

ନାହିଁ ଇଚ୍ଛା ତେଜି ବୃନ୍ଦାବନ, ତେଜି ତୁମ୍ଭ ଶଶାଙ୍କବଦନ,
ତେଜି ସ୍ନେହାକର ଜନନୀ ପିଅର କରିବାକୁ ମଥୁରା ଗମନ
ଗୋ କିଶୋର ! ୭

ବିଧି ଇଚ୍ଛାରେ ଚଳେ ସଂସାର, କିଏ ବିଧିଠାରୁ ବଳୀୟାର ?
ରକ୍ଷ ବନ୍ଧୁ ପର କର ମଧୁପୁର ମୋତେ ନେଉଛନ୍ତି କଂସନଗର
ଗୋ କିଶୋର !” ୮

ରାଧା ଚିବୁକେ କରକମଳ ପୁଣି ନିବେଶି ଯଶୋଦାବାଳ,
କହନ୍ତି, “ମେଲଣି ସୁଧାଂଶୁବଦନି ! ଦିଅ ବିଳମ୍ବ ହେଉଛି କାଳ
ଗୋ କିଶୋର ! ୯

ରଥ ସଜାଇ କଂସ ଡଗର ,           ଫେର ଯିବାକୁ ହୁଏ ଭଗ୍ନର,
ତର୍ଜ୍ଜନ ଗର୍ଜ୍ଜନ  କରେ କ୍ଷଣ କ୍ଷଣ   ବେଳ ଯିବାକୁ ମୋତେ ସତ୍ୱର
ଗୋ କିଶୋରି ! ୧୦

ମାତା ଅର୍ଚ୍ଚନା କରନ୍ତୁ ଶିବ ,           ହୃଦେ ମନାସିଣ ମୋର ଶିବ,
ନାଶିବେ ଦୁର୍ଗତି ମୋର ଦୁର୍ଗାପତି  ସଙ୍ଗେ ଯିବେ ଭ୍ରାତା ବଳଦେବ
ଗୋ କିଶୋରି !" ୧୧

କାଷ୍ଠପୁତ୍ତଳିକା ପରି ହୋଇ ,           ମୁଗ୍ଧା ଶ୍ୟାମଗତପ୍ରାଣା ରାଇ,
କୃଷ୍ଣର ବଚନ     କରିଣ ଶ୍ରବଣ     କ୍ଷଣେ ରହିଲା କିଛି ନ କହି
ହେ ସୁଜନ ! ୧୨

ହେଲା ଭାବଶୂନ୍ୟ ରାଧା ମନ,           ମୁଖେ ସ୍ଫୁରିଲା ନାହିଁ ବଚନ,
ଶ୍ୟାମର କମଳ-     ବଦନେ ଅଚଳ     ହେଲା ଚଞ୍ଚଳ ମୀନନୟନ
ସେ ରାଧାର । ୧୩

କ୍ଷଣେ ମଉନେ ରହି କିଶୋରୀ        ଧୀରେ କହିଲେ କୋମଳ କରି,
"ସ୍ନେହ-ଗୋମୁଖରୁ*  ଝରିଲା କି ଗୁରୁ   ମୃଦୁ ଶୀତଳ କାହ୍ନୁବାରି
ହେ ସୁଜନ ! ୧୪

ଏତେ କଠୋର ଛଳବଚନ           ନୋହେ ଉଚିତ ଜୀବନଧନ,
ହୃଏ କି ମଲ୍ଲିକା   ଦୁଖେ ତଳଳିକା    ଚଷବାରି କରଲେ ସେଚନ
ହେ ମୋହନ !" ୧୫

ପୁଣି କହେ ହସି ମନ୍ଦହାସ ,           ଯଥା ଦ୍ୱିତୀୟାଶଶୀ ପ୍ରକାଶ,
କପଟଅଗ୍ରର     ଚିରକାଳ ପାର     ତାର କଥା କେ କରେ ବିଶ୍ୱାସ
ହେ ମୋହନ ! ୧୬

ଦିନେ ହେଲ ଯମୁନାରେ ଦାସ ,    ଦିନେ ହେଲ କଳାଭୁତ ବେଶ,
ଦିନେ ଭଗାରୁଣୀ ଦିନେ ସେ ମାଳୁଣୀ ତୁମ୍ଭ କଥାରେ ନାହିଁ ବିଶ୍ୱାସ
ହେ ମୋହନ ! ୧୭

---

*ଗଙ୍ଗାର ଉତ୍ପତ୍ତିସ୍ଥାନ

ହେଲ କନ୍ଦୁଅ ଅପୂର୍ବ ଜୀବ, ଗୋପେ ଭ୍ରମିଲ କରି ଅଭବ ।
ନାମ ମାୟାଧର ଅଟଇ ଯାହାର କେ ତା କଥା ପ୍ରତ୍ୟୟ କରିବ
ହେ ମୋହନ ! ୧୮

ଶୁଣ କର କହ ବଂଶୀଧର , ଯଦି ସତ୍ୟ ଯିବ ମଧୁପୁର,
ଅଟେ ଇଷ୍ଟଦେବ ବଂଶୀ ପରି ତବ ବଂଶୀ ଛୁଇଁଣ ଶପଥ କର
ହେ ମୋହନ !” ୧୯

ଯଥା ପ୍ରଦୋଷେ ନୀଳକମଳ, ମ୍ଳାନବଦନେ ଯଶୋଦାବାଳ
କହିଲେ, “କିଛିତ ନ କରେଁ ରାଜୀବ-ନେଯି ! ବିଳମ୍ବ ହେଉଛି କାଳ
ଗୋ କିଶୋରି !” ୨୦

ଶ୍ୟାମ ବଚନ ଶ୍ରୀମତୀ ଶୁଣି, ଝାଟ* ପଡ଼ି ଲୋଟିଲେ ଧରଣୀ
ରମ୍ଭା ବାତ୍ୟାହତ ଯଥା ଭୂପତିତ କୋଳେ ଧଇଲେ ମୁରଲୀପାଣି
ହେ ସୁଜନ ! ୨୧

ନୀଳଜଳଦପଟଳେ ଯଥା ଶୋଭେ ଅଚଳା ଚପଳାଲତା,
କଷ୍ଟିପାଷାଣେ ବା ହେମରେଖା ଅଙ୍କା ତଥା ଶୋଭିଲେ କୁମୁଦଯୁତା
ହେ ସୁଜନ ! ୨୨

ଦେଖି ଦୂତୀ ହେଲ ସମାକୁଳ, ପାଶେ ପ୍ରବେଶି ଅତି ଚଞ୍ଚଳ
ବାସର ଅଞ୍ଚଳ ଭରଣି ସଚଳ ମୁଖେ ସିଞ୍ଚିଲ ଶୀତଳଜଳ
ହେ ସୁଜନ ! ୨୩

ଧୀରେ ଶୋକକଳୁଷିତସ୍ୱରେ ପ୍ଲାବି ନୟନ ନୟନ-ନୀରେ,
“ଶ୍ରୀମତି” “ଶ୍ରୀମତି” ଡାକି ଡାକି ଦୂତୀ କର-ପତର ତାଡ଼ିଲ ଶିରେ
ହେ ସୁଜନ ! ୨୪

ଶୋକାକୁଳ ହୋଇ ବଂଶୀଧର ଅଶ୍ରୁ ସିଞ୍ଚିଲେ ରାଧା ମୁଖର,
ଯଥା ନବଘନ କରଇ ମୋଚନ ସନ୍ତପତ ଶତଦଳେ ନୀର
ହେ ସୁଜନ ! ୨୫

---

* ଝଟିତର ଅପଭ୍ରଂଶ

ରାଧା ଶ୍ରୁତ ପାଶେ ବେଣୁପାଣି, ଧୀରେ ଉଚ୍ଚାର କୋମଳବାଣୀ,
ଡାକିଲେ "କିଶୋରି" "ରାସରସେଶ୍ୱରି" ପଢ଼ିଲେ କି ମନ୍ତ୍ର ସଞ୍ଜୀବନୀ
ହେ ସୁଜନ ! ୨୬

ପାଇ ଷଟପଦ ବ୍ରଜଚନ୍ଦ୍ରସ୍ୱର, ଧୀରେ ଗୃହିଁଲେ ନୟନ ଫେଡ଼ି,
କିବା ଅରବିନ୍ଦ ଫେଡ଼ି ନିଜ ମୁଦ ନେତ୍ର ମୋଦକୁ ଦେଲା ସଞ୍ଚାରି
ହେ ସୁଜନ ! ୨୭

ଦେଖି ନିଜକୁ କେଶବ କୋଳେ, ଗୃହିଁ ଦୂତୀଙ୍କ ଚେତନ ଡୋଳେ,
ହୋଇ ଲଜ୍ଜାବଶ ଉଉଭରେ ବାସ ରାଧା ସମ୍ଭାଳି ବସିଲ ତଳେ
ହେ ସୁଜନ ! ୨୮

ଶ୍ୟାମ ମଥୁରା ଗମନ କଥା, ଅସି ଘୋଟିଲା ମାନସେ ଯଥା,
ପ୍ରାବୃଟ ଜଳଧର ଘୋଟଇ ଅମ୍ବର ହେଇଁ ଅମାରଜନୀ ବଗଡା
ହେ ସୁଜନ ! ୨୯

ବ୍ରୀଡାବକ୍ରମ ରାଧା ବଦନ, କଲା ଧାରଣ ମ୍ଳାନବରଣ,
ଯଥା ନିଦାଘର ପୂର୍ଣ୍ଣ ଶଶଧର ଶୋଭେ ହେଲା ଅଧର କମ୍ପନ
ହେ ସୁଜନ ! ୩୦

ନୀର ନେତ୍ରୁଁ ବହୁ ଝରଝର, ଭିଜା ଗଣ୍ଡଦେଶ ଜରଜର,
ରୁଦ୍ଧ କଣ୍ଠଦେଶ ନ ହୁଏ ପ୍ରକାଶ ମୁଖୁଁ ପିକବଚନୀର ଗିର
ହେ ସୁଜନ ! ୩୧

ପିକକଣ୍ଠ ହୋଇଲା କର୍କଶ, ଶୋକ-ପ୍ରାବୃଟ ହେଇଁ ପ୍ରବେଶ,
ଅତି ପ୍ରୟାସରେ ଖଣ୍ଡବଚନରେ ଗଦଗଦେ ଭାଷିଲା ବାଳୀଶ
ହେ ସୁଜନ ! ୩୨

"ଗୋପ-ପଙ୍କଜବନ-ମିହିର ! କରି ଗୋପପୁର ଅନ୍ଧକାର,
ମଥୁରାଭୁବନ କରିବ ଗମନ ଦୟା ତଳେ କି ନାହିଁ ଚିତ୍ତର
ହେ ମୋହନ ! ୩୩

ନନ୍ଦ ଗୋପପୁର ଅଧିପତି, ରାଜକାର୍ଯ୍ୟମାନ ସେ ଜାଣନ୍ତି,
କି ଶଠେକପଣେ ନ ଯାଇ ଆପଣେ ମଧୁପୁରେ ତୁମ୍ଭଙ୍କୁ ପେଷନ୍ତି
ହେ ମୋହନ ! ୩୪

ସରୋଜିନୀର ଆଶ୍ରୟ ବନ, ହେଉଁ ବାରବାରଣ ଭଗନ,
ବହିଯାଏ ପାଣି କମ୍ବାଳଶାୟିନୀ ନଳିନୀର କି ରହେ ଜୀବନ
ହେ ମୋହନ ! ୩୫

ନୋହେ ଅଧିନୀ ଶ୍ରୀପଦେ ଦୋଷୀ, ଅଧିନଙ୍କ କା'ଙ୍କରେ ନିବେଶି,
ହୋଇଅଛ ଅଜ ମଥୁରାକୁ ସଜ ଝୁରିବାକୁ ଦିବସ ନିଶି
ହେ ମୋହନ ! ୩୬

ନାରୀସ୍ୱଭାବ-ସୁଲଭ ଦୋଷ, କଲି ହୋଇଣ ସ୍ୱଭାବବଶ
ଥିଲି ଦମ୍ଭ ମନେ କ୍ଷମାଶୀଳଗୁଣେ ଅନୁପମ ଭବେ ପୀତବାସ
ହେ ମୋହନ ! ୩୭

ଦିନେ ଦିନେ ନିଜ ମୂଢ଼ପଣେ, କଷ୍ଟ ଦେଇଛୁ ସହିଣ ମାନେ
ନ କରିବ ମାନ ଥିବାଯାଏ ପ୍ରାଣ ମୋତେ ନ ଫିଙ୍ଗ ଦୁଃଖ-ଦହନେ
ହେ ମୋହନ ! ୩୮

ମୋର ଦୋଷମାନ ମନେ ଧରି, ଯଦି ଯାଉଛ କଂସନଗରୀ,
ଧରୁଛୁ ଚରଣ କର କ୍ଷମାଦାନ ହୃଦେ ଅଛ କ୍ଷମାସିନ୍ଧୁ ଭରି
ହେ ମୋହନ ! ୩୯

ଏକା ତୁମ୍ଭଙ୍କୁ କରି ସମ୍ବଳ, ବ୍ରଜେ ସହିଲି ନିନ୍ଦା ବହୁଳ,
ନାହରେ ଗଞ୍ଜନା ଜଗତଲଞ୍ଛନା ସହି ପାଇଲି କି ପ୍ରତିଫଳ
ହେ ମୋହନ ! ୪୦

ଫନ୍ଦା ଫାନ୍ଦିଥିଲି ମୁଁ ତୁମ୍ଭଙ୍କୁ, ମନେ ଭାବିଥିଲି ମୁଁ ଦମ୍ଭକୁ,
ମୋତେ ବଂଶୀଧର ନ କରିବେ ଦୂର ବୃଥା ପାତିଲି ଫାନ୍ଦ-ଅମ୍ଭକୁ
ହେ ମୋହନ ! ୪୧

ଏହା ନ ଥିଲା ସ୍ୱପନେ ମନେ,  ଶ୍ୟାମ ଶରଚ୍ଛେଦ ସନ୍ଦେଶ ଦାନେ,
ଗୁପ୍ତ ଭବଙ୍ଗାଭ  କାହାର ଅସ୍ତ୍ର  ଶରୁ ଘଟିଲ ବଧୂବଧାନେ
ହେ ମୋହନ ! ୪୨

ପ୍ରୀତି-ଲତିକା କରି ରୋପଣ ,  କଲ ପ୍ରେମ ସଲିଳ ସେଚନ,
ନବ-କଳିକାସ୍ତ  ମୁକୁଳନାରମ୍ଭ  ହେଉଁ ତାହାକୁ କଲ ଛେଦନ
ହେ ମୋହନ ! ୪୩

ତୁହେ କୁଟିଳା ନଣନ୍ଦ ମନ୍ଦ ,  ତୁମ୍ଭ ଲାଗି ତା ସଙ୍ଗେ ମୋ ଦ୍ୱନ୍ଦ୍ୱ,
ତୁମ୍ଭ ଲାଗି ସିନା  ସହେ ମୁଁ ଗଞ୍ଜନା  ଦୁଃଖ ପାସୋରି ହୁଏଁ ଆନନ୍ଦ
ହେ ମୋହନ ! ୪୪

ସୁଧାଦଶୀ ରାହୁଗ୍ରହ ପରି ,  ମୋତେ କରେ ବଧୂ ଦୁରାଚାରୀ,
ଅମୃତ ଭୋଜନ  କାଳରେ ଛେଦନ  କରେ ଶିର କି ମନେ ବିଚାରି
ହେ ମୋହନ ! ୪୫

ଯଦି ଛାଡ଼ିଣ ଯିବ ମଥୁରା ,  ହେବ ସଦନ ଭୀଷଣ କାରା,
ହେବ ବୃନ୍ଦାବନ  ମରୁର ସମାନ  ହେବ ଯମୁନା ଗରଳ-ନୀରା
ହେ ମୋହନ ! ୪୬

କିଏ ଯମୁନା ତଟିନୀ କୂଳେ ,  ଛନ୍ଦେ ଉଭା ହୋଇ ନୀପମୂଳେ,
"କିଶୋରି" "କିଶୋରି" "ରାଧା" "ରାଧା" କରି, ବଂଶୀ ବଜାଇବ ସନ୍ଧ୍ୟାକାଳେ
ହେ ମୋହନ ! ୪୭

କିଏ ବାଳା ଭିଖାରୁଣୀ ବେଶେ ,  ହୋଇ ବୀଣାପାଣି ଗୋପଦେଶେ,
କିଣି ବୀଣାପାଣି  କରି ବୀଣାଧ୍ୱନି  ଗାଇ ନାଚିବ ଗୋପୀଙ୍କ ପାଶେ
ହେ ମୋହନ ! ୪୮

କିଏ କପଟେ ହୋଇ ଧୀବର ,  ହେବ ଯମୁନାରେ କର୍ଣ୍ଣଧାର,
କରି ନାନାରଙ୍ଗ  ଯମୁନାତରଙ୍ଗ  ଗୋପୀଜନଙ୍କରେ କରିବ ପାର
ହେ ମୋହନ ! ୪୯

କିଏ କପଟେ ହେବ ସଙ୍ଗାସୀ, ଲକ୍ଷାରସେ ଅଙ୍ଗ ପରି କରି,
ଧରି ମୋ ଚରଣ କରିବ ରଞ୍ଜନ ନାନାବନ୍ଧେ ବାନ୍ଧିବ କବରୀ
ହେ ମୋହନ ! ୫୦

ଲଳିତ ଯମୁନାତଟିନୀ ତଟେ , କିଏ ଜଗିଣ ବସିବ ବାଟେ,
ଭାଙ୍ଗିଣ କଳସ ହେବ ହସ ହସ ଦେଲେ କର୍କଶ ଗାଳି ନିସ୍ୱଟେ
ହେ ମୋହନ ! ୫୧

ତାହା ଶ୍ରୀମୁଖ ଦର୍ଶନ ଆଶେ, ଲଜ୍ଜା ଭୟ ନ ରଖି ମାନସେ,
ନ ମାନିଣ ମନା ଯିବ ମୁଁ ଯମୁନା ଲଳିତ ଭ୍ରମିବ କାନନଦେଶେ
ହେ ମୋହନ ! ୫୨

ତାହାଠାରେ ମୁଁ କରିବ ମାନ , କିଏ ମୋଠାରେ ହୋଇଣ ଦୀନ,
ତେଜିଣ ଉନ୍ନତ କରିଣ ବିନତ ମୋର ମାନ କରିବ ଭଞ୍ଜନ
ହେ ମୋହନ ! ୫୩

ତାହା ବାମପାଶେ ଠିଆ ହୋଇ , ବେଣୁ ବଜାଇ ଶିଖିବ ମୁହିଁ,
କିଏ ଗୃଷ୍ଟ କରି କହିବ, "କିଶୋରି ତୁମ୍ଭେ ଆଜଠୁଁ ଶ୍ୟାମ ମୁଁ ରାଈ"
ହେ ମୋହନ ! ୫୪

ଭଲ ତୁମ୍ଭଙ୍କୁ ପୁରୁଷୋତ୍ତମ, ଛାଡ଼ି ଲଜ୍ଜା ଭୟ କୁଳଧର୍ମ,
କରନ୍ତୁ ଅର୍ପଣ ମୋ ମନ ଜୀବନ ଜନମସ୍ୱେ ତୁମ୍ଭ ସୁଧାପ୍ରେମ
ହେ ମୋହନ ! ୫୫

ତେଜି ମୋ ମନ ପ୍ରାଣ ସଙ୍ଗରେ , ରଖି ପିଣ୍ଡ ମାତ୍ର ଗୋପପୁରେ,
ହେମନ୍ତ ମଥୁରା କରୁଛ ଯାତରା ପିଣ୍ଡ ଦାଉ ମଧ୍ୟ ତୁମ୍ଭ କରେ
ହେ ମୋହନ ! ୫୬

ତେଣେ ନିକର କରିବ ଗତ, ଯେଉଣେ ଯାଉଛ ତେଜି ମୋ ମତ,
ଦେଖିବ କେ ଜନ ରୋଧେ ମୋ ଗମନ ନାହିଁ କାହାରିକି ମୋର ଭୀତ
ହେ ମୋହନ ! ୫୭

କର ମୋହର ମନ ହରଣ,　　　　ଏବେ କରୁଅଛ ପଳାୟନ,
ମୋତେ ନନ୍ଦବଳା ନ ଭାଳ ଅବଳା, ବନେ କିଣାରେ କରେ ଭ୍ରମଣ
ହେ ମୋହନ ! ୫୮

ମୋତେ ଫେରାଇ ଦେଇ ମୋ ମନ,　　ସୁଖେ ମଥୁରା କର ଗମନ,
ରାଜପୁତ ହୋଇ କପାଇଁ ଗୋଇଲ ଦେଖ ଯାଉଛ ମୋ ନୀଚ ମନ
ହେ ମୋହନ ! ୫୯

ରାଧାବଚନେ ହସି ଶ୍ରୀହରି,　　　　ଧୀରେ କହନ୍ତି କମଳ କର,
"ସନ୍ତାପ ନ କର ମନେ ଯୋଷାବର ! ସଦାକାଳେ ମୁଁ ଅଟେ ତୁମ୍ଭର
ଗୋ କିଶୋରି ! ୬୦

ଛାଡ଼ି ମଞ୍ଜୁଳ ନିକୁଞ୍ଜବନ,　　　　ବନପ୍ରିୟ କି କରେ ଭ୍ରମଣ,
ଉଡ଼ପ୍ରମନ୍ଦଦେଶେ ଅଥବା ଆକାଶେ ରହେ ବାରି ତେଜିଣ କି ମୀନ
ଗୋ କିଶୋରି ! ୬୧

ମଧୁପୁରେ ରହି ଦିନ ଗୁରି,　　　　ବ୍ରଜଧାମକୁ ଆସିବି ଫେରି,
ତୁମ୍ଭଠାରେ ମୋର ମନ ସଦା ସ୍ଥିର ଲୋହଶଳାକା ଚୁମ୍ବକ ପରି
ଗୋ କିଶୋରି ! ୬୨

ଦେଖ କେହି ନୁହେ ନିଜାୟତ୍ତ,　　　ଅଟେ ବିଧାନାବଳୀ ଜଗତ,
ବିଧାନସ୍ରୋତରେ ଭାସି ଗତି କରେ ଏହି ଚରାଚର ଅବିରତ
ଗୋ କିଶୋରି !" ୬୩

ରାଧା କମଳନୟନୁଁ ବାରି,　　　ବାସେ ପୋଛି ଦେଇ ବଂଶୀଧାରୀ,
କନୟରେ ପୁଣ କହିଲେ ବଚନ "ଦିଅ ଆଜ୍ଞା ଯିବି ମଧୁପୁରୀ
ଗୋ ! କିଶୋରି !" ୬୪

ରାଧା କହିଲେ, "ଅଛୁ ମୋ ପ୍ରାଣ,　　ରହି ଦିନ ଗୁରି ଅବା ବାଣ,
ଆସିବ ସୁନ୍ଦର ! ଫେରି ଗୋପପୁର ବସି ଗଣିବି ଆସିବା ଦିନ
ମୁଁ କାତରେ !" ୬୫

ବେନି ରହିଲେ କ୍ଷଣେ ମଉନେ,     ବାଣୀ ନଇଲା ବେନି ବଦନେ,
ମାନ ଝରନ୍ତର   ନେତ୍ରୁଁ ନେତ୍ରନୀର   ଝରି ମିଶିଲା ବକ୍ଷଚନ୍ଦନେ
ହେ ସୁଜନେ ! ୬୭

ଯଥା କ୍ଷୁଧାର୍ତ୍ତ ବ୍ରତୀଜନ ,     ବ୍ରତପୂର୍ଣ୍ଣାହ୍ନେ କରେ ଭୋଜନ,
ବେନିଙ୍କ ନୟନ   କଲା ତଥା ପାନ   ବେନି ଅମୃତମୟ ଲପନ
ହେ ସୁଜନ ! ୬୮

ଯଥା ନୃଘାତୀ ଅପେକ୍ଷା କରେ,     ପ୍ରାଣଦଣ୍ଡ-ଦଣ୍ଡକୁ କାତରେ,
କଲକ ଅପେକ୍ଷା   ତଥା ପୀନବକ୍ଷା   ଶ୍ୟାମଗମନଭୀତା କୁନ୍ତରେ
ହେ ସୁଜନ ! ୬୯

ରାଧା ମୁଖ କରି ଧରଣୀକି,     କ୍ଷୀଣସ୍ୱରେ କହିଲେ ବାଣୀକି,
"ନ ନେଉଛ ଶ୍ୟାମ ମୋତେ କଂସଧାମ କାଲି ଯିବ ତହିଁ ଦଧି ବିକି
ହେ ମୋହନ !" ୭୦

ଅଳ୍ପ ହସିଣ କହିଲେ ହରି,     "ଅତି ଉତ୍ତମ ହେବ କିଶୋରି !
ଯେତେ ଦୁଗ୍ଧ ଦଧି ନେବ ରସନିଧି ! ନେବି ସକଳ ମୁଁ କିଣୁ କରି
ଗୋ କିଶୋରି !" ୭୧

ଦେଇ ରାଧାକୁ ସ୍ନେହାଲିଙ୍ଗନ,     ଦେଇ ସାଶ୍ରୁଗଣ୍ଡେ ଚୁମ୍ବଦାନ,
ସହି ମନକଷ୍ଟ   କଲେ ନିଜ ପୃଷ୍ଠ   ରାଧା ଅଙ୍ଗକୁ ବଂଶୀବଦନ
ହେ ସୁଜନ ! ୭୨

ହେଲେ ଶ୍ୟାମ କିଛି ଅଗ୍ରସର ,     ଧୀରେ ରହିଲା ଗୋପୀନାଗର,
ସ୍ୱପନ ସମାନ   ସବୁ ହେଲା ଜ୍ଞାନ   ନିଜ ଚିତ୍ତ ନ ହେଲା ଗୋଚର
ହେ ସୁଜନ ! ୭୩

ପୁଣି ହୋଇ କ୍ଷିପ୍ରଜନ ପରି,     ଶ୍ୟାମ ପଛେ ଧାଇଁଲେ କିଶୋରୀ,
ଶ୍ୟାମ ସ୍ତବେ ପୁଣ   ଖଞ୍ଜିଣ ବଦନ   କାନ୍ଦ କହିଲେ କୋମଳ ତର
ହେ ସୁଜନ ! ୭୪

"ମଧୁପୁରେ କି ଯିବ ନାଗର, କହ ପଚାରି ଶୁଣ ମୋହର,
ଛୁଇଁ ମୋର ମାଥ କର ହେ ଶପଥ ବଂଶୀ ଛୁଇଁଣ ଶପଥ କର
ହେ ମୋହନ !" ୭୫

ରାଧା ଗଣ୍ଡେ ନିଜ ଗଣ୍ଡ ଯୋଖି, ହରି କହିଲେ, "ଏନ୍ଦୁମୁଖି !
କରୁଛି ଶପଥ ହୋଇ ବେଣୁହସ୍ତ ଫେରି ଆସିବି ଉତ୍ସବ ଦେଖି
ଗୋ କିଶୋରି ! ୭୬

ପାଳେ ସଂସାର ବିଧିର ଆଜ୍ଞା, ବୃଥା ସିନା ମାନବ ପ୍ରତିଜ୍ଞା,
ବିଧାତାର ବଳ ସତତ ସଫଳ ତୁମ୍ଭେ ଅଟ ତ ପରମ ବିଜ୍ଞା
ଗୋ କିଶୋରି !" ୭୭

ଶ୍ୟାମ ବଚନେ ବିରହଭୀତା, ରାଧା ପଡ଼ିଲେ ଯେସନେ ଲତା,
ଯେବେ ପ୍ରଭଞ୍ଜନ ଅତି ବଳବାନ କରେ ତାକୁ ଶାଖୀବିରଚ୍ୟୁତା
ହେ ସୁଜନ ! ୭୮

ସଖୀମାନେ ଅତି ଶୋକାକୁଳେ, ତାକୁ ଟେକିଣ ଧରିଲେ କୋଳେ,
ସଧୀରେ ଚାଳନ କରିଣ ବ୍ୟଜନ ବାରି ସିଞ୍ଚିଲେ ମୁଖ-କମଳେ
ହେ ସୁଜନ ! ୭୯

ଯଥା ପ୍ରତିମାକୁ ଧରି ଜନେ, ଯାନ୍ତି ଘେନିଣ ଅର୍ଚ୍ଚନା ସ୍ଥାନେ,
ସଖୀମାନେ ଧୀରେ ତଥା ଶଯ୍ୟାଗାରେ ନେଲେ ରାଧାଙ୍କୁ ଅତି ଯତନେ
ହେ ସୁଜନ ! ୮୦

ରାଧା ପାଶରୁ ଘେନି ମେଲାଣି, ଧୀରେ ଉଠିଲେ ବେଣୁପାଣି,
ବରଜ ଧାମରେ ଭ୍ରମି ଘରେ ଘରେ ନେଲେ ବିଦାୟ ବିନୟ ଭଣି
ହେ ସୁଜନ ! ୮୧

ଦେଇ ତାହାକୁ ସ୍ନେହାଲିଙ୍ଗନ, କହି ତାହାକୁ ସୁଧାବଚନ,
ତାହାକୁ ଭକତି ଦେଖାଇ ଶ୍ରୀପତି ଫେରି ଗୃହକୁ କଲେ ଗମନ
ହେ ସୁଜନ ! ୮୨

ବ୍ରଜେ ଯେତେ ଯୁବତୀ ଯୁବକେ, ବୃଦ୍ଧା ବୃଦ୍ଧ ବାଳିକା ବାଳକେ,
ଶ୍ୟାମ ଗୁଣ ରୂପ ଧେନ କଲେ ଗଲ୍ପ ବସି ଗୃହେ ଦାଣ୍ଡେ ଥୋକେ ଥୋକେ
ହେ ସୁଜନ ! ୮୩

କେହୁ କହେ, "ନନ୍ଦ ମନ୍ଦ ଅତି, ଶିଳା-ହୃଦୟା ଯଶୋଦା ସତୀ,
ନୋହିଲେ କପାଇଁ ଦିଅନ୍ତେ ପଠାଇ ବାଳସୁତଙ୍କୁ କଂସର ଛତି
ହେ ପୌରେୟ !"୮୪

କେହୁ କହେ 'ଅଛି ଶ୍ୟାମ ମନ, କରିବାକୁ ମଥୁରା ଗମନ,
ନୋହିଲେ କପାଇଁ ତରତର ହୋଇ ମାଗି ବୁଲନ୍ତେ ମେଲଣିଦାନ
ହେ ପୌରେୟ !"୮୫

କେହୁ କହେ "ଅମ୍ଭ ପୀତବାସ, ନ କରନ୍ତୁ କଂସ ରାଜ୍ୟେ ବାସ,
ବ୍ରଜଅଧିପତି ନନ୍ଦ ତ ଅଛନ୍ତି ଅମ୍ଭ ନୃପତି ନୁହଇ କଂସ
ହେ ପୌରେୟ !" ୮୬

କେହୁ କହେ, "ଦେଇ ବହୁଧନ, ଗୁଳ ମୋହିବା ଅକ୍ରୂର ମନ,
ଶଙ୍ଖଧର ପର ରାଜକର୍ମଚାରୀ ତାଙ୍କୁ ଗଦ ମନ୍ଦ ବିନା ଧନ
ହେ ପୌରେୟ !" ୮୭

କେହୁ କହେ, "ଯମ ତ ଅକ୍ରୂର, ଘେନିଯିବ ଜୀବନ ଗୋପର,
ତା କର ଚରଣ କରିଣ ବନ୍ଧନ ଗୁଳ୍ ନିକ୍ଷେପିବା ଯମୁନାର
ହେ ପୌରେୟ !" ୮୮

କେହୁ କହେ, "ବଧିଲେ ଅକ୍ରୂରେ, ରହି ପାରିବ କି ଗୋପପୁରେ,
ସେ ଦାରୁଣ କଂସ ହୋଇ କ୍ରୋଧବଶ ବୁଡାଇବ ବ୍ରଜକୁ ସାଗରେ
ହେ ପୌରେୟ !" ୮୯

କେହୁ କହେ, "ରାଜା କଂସାସୁର, ଗୋପେ ପେଷିଲା ଯେତେ ଉଗର,
ସମସ୍ତେ ଶମନ ଭବନେ ଗମନ କଲେ କପାଁ ନ ଯିବ ଅକ୍ରୂର
ହେ ପୌରେୟ !" ୯୦

କେହୁ କହେ, "ଚାଲ ସର୍ବେ ମିଳି, କରି ଡଗର ସଙ୍ଗରେ କଳି,
ଗାଳି ଦେବା ଅଗ୍ରେ ପ୍ରହାରିବା ଛଟେ ଦେବା ମନେ ଅଛି ଯେତେ ଗାଳି
ହେ ପୌରେୟ !" ୯୧

କେହୁ କହେ, "କଂସ ଅଧ୍ୟାଗୃରେ, କାଏ ରହିବ ଗୋପନଗରେ,
ଛାଡ଼ିନ ଶ୍ୟାମଧନ ଚାଲ ପଳାୟନ କରି ଲୁଚି ରହିବା କାନ୍ତାରେ
ହେ ପୌରେୟ !" ୯୨

କେହୁ କହେ, "ଚାଲ ଯିବା ଦ୍ରୁତ, ବଳେ ଭାଙ୍ଗିବା ଅକ୍ରୂର ରଥ,
ଦେଖିବା ଅକ୍ରୂର କେସନ ପ୍ରକାର ନିବ ଘେନିଣ ବ୍ରଜେଶସୁତ
ହେ ପୌରେୟ !" ୯୩

କେହୁ କହେ, "ଚାଲ ସର୍ବଜନ, ଗୋପଦାଣ୍ଡେ କରିବା ଶୟନ,
କଂସାସୁର ଦୂତ ନ ପାଇଲେ ପଥ ରଥ ଚଳାଇ ନେବ କେସନ
ହେ ପୌରେୟ !" ୯୪

କେହୁ କହେ, "ବାଜିଣ ରଥାଙ୍ଗ, ଯାଉ ପଛେ ଭାଙ୍ଗି ଉତ୍ତମାଙ୍ଗ,
ନ ଛାଡ଼ିବା ପଥ ନ ଛାଡ଼ିବା ରଥ ଛାଡ଼ି ନ ଦେବା ଆମ୍ଭ ଶ୍ରୀରଙ୍ଗ
ହେ ପୌରେୟ !" ୯୫

କେହୁ କହେ, "କଂସକୁ କି ଭୀତ, ଶ୍ୟାମ ସଙ୍ଗରେ କରିବା ଗତ,
ଉପ୍ରଦ୍ରବ ଦେଖିବା ବ୍ରଜେ ଲେଉଟିବା କ୍ଷଣେ ନ ଛାଡ଼ିବା ଶ୍ୟାମ କତ
ହେ ପୌରେୟ !" ୯୬

ଏହିରୂପେ କରନ୍ତି ଚତ୍ବର, ବ୍ରଜନିବାସୀ ଜନନୀକର,
କାହା ନେତ୍ରଁ ନୀର ଝରେ ଝର ଝର କେହୁ ବସେ ମୁଣ୍ଡେ ଦେଇ କର
ହେ ସ୍ୱଜନ ! ୯୭

କେହୁ ଜାନୁରେ ମସ୍ତକ ରଖି, ଦୁଃଖେ ମୁଖ କରି ଅବନୀକି,
ବସେ ଧରାସନେ କେହୁ ବା ଅସନେ ଭୁଜଛନ୍ଦ ମଧ୍ୟେ ଜାନୁ ରଖି
ହେ ସ୍ୱଜନ ! ୯୮

କେହୁ ସ୍ୱହସ୍ତସ୍ତମ୍ଭେ ଭର ଦେଇ, ଉଭା ଚିତାର୍ପିତ ପରି ହୋଇ,
ବାମକରେ କେହୁ ବାମଗଣ୍ଡ ଦେଇ ବସେ କେହୁ ଅବା ଧରଣୀପୃଷ୍ଠି
ହେ ସୁଜନ ! ୯୯

ଗୋପଜନଙ୍କ ନୟନ ଯୁଗ୍ମ, ପରସ୍ପର ନିଜ ନିଜ ବୃତ୍ତ,
ହେଲେ ମନେ ଲୀନ ବ୍ରଜପୁର ଜନ ଗଲେ ପାସୋରି ଦୈନିକକୃତ
ହେ ସୁଜନ ! ୧୦୦

ଶ୍ୟାମ ଗମନକାଳ କ୍ରମଶ, ଧୀରେ ଅସି ହେଲା ପରବେଶ,
ଘୋର ଶୋକବାରି ଉତ୍ତାଳ ଲହରୀ କ୍ରମେ ପ୍ଲାବିଲା ଗୋକୁଳଦେଶ
ହେ ସୁଜନ ! ୧୦୧

କୃଷ୍ଣଚରିତେ ହୋଇ ହରଷ, କୃଷ୍ଣଚରିତରସିକେ ! ରସ,
ଭକତି ବଶରେ ଧ୍ୟାଇ ମାନସରେ ଚିନ୍ତାମଣିଚରଣ ସାରସ
ହେ ସୁଜନ ! ୧୦୨



## ପଞ୍ଚମ ଛାନ୍ଦ

ରାଗ—ଭାମୋଦୀ *

## କୃଷ୍ଣଙ୍କର ମଥୁରା ଯାତ୍ରା

ବିଗତା ହେଲା ନିଶା ଶୁଭ୍ରବରଣୀ ଉଷା ସୁବେଶା ହସିଲା ହରଷେ,
ଦେଖି ନିଜ ଅତୁଳ ଶୋଭାରାଶି ବିମଳ ବିପୁଳ ଦିଗ-ଆଦରଶେ
ହେ ବୁଧଜନ !

ପ୍ରାଚୀସୁନ୍ଦରୀ ହସି ରଙ୍ଗେ, ରଞ୍ଜିଲା ଉଷାକୁ ସୁରଙ୍ଗେ,
ଜାଗିଣ ନିଦ୍ରାଳସ ଭାଷ କଲେ ପ୍ରକାଶ ସୁବାସ-ଶାଖାରେ ବିହଙ୍ଗେ
ହେ ବୁଧଜନ ! ୧

---

* ଉଷବଶ୍ଳୋକ "କୃଷ୍ଣ କଂସନଗର ଯିବା ଶୁଣି ବାଳର" ସ୍ୱରେ

ଦୁଃଖୀମନେ ଯାମିନୀ ଦିବସଠାରୁ ଯେମନ ମେଲାଣି ଦେଲା କୋଳାକୋଳି
ଛାଡ଼ି ନଭବିହାର ପାଣ୍ଡୁର ଶଶଧର ସଙ୍ଗତେ ଯେମନ ତାରାବଳୀ
ହେ ବୁଧଜନ !
ଧୀରେ ଗମିଲା ଅସ୍ତଗିରି, କୁମୁଦିନୀକ ପ୍ରାଣବର,
ରହୁଁ ମୁଦ୍ରିତେ ଦୁଃଖେ ମିଳାଣି ଶିରୀମୁଖେ ବିମୁଖେ କାନ୍ଦିଲେ ଝଙ୍କାର
ହେ ବୁଧଜନ ! ୨

ବହିଲେ ଧୀରଧୀର ପ୍ରେମେ ବହୁପୀବାର ସମୀର ଧୀର ଅଲିଙ୍ଗନେ,
କୁସୁମ ପରିମଳ ସଞ୍ଚି ଦିଗ୍‌ମଣ୍ଡଳ ଅକୁଳ କଲା ଅଳିଗଣେ,
ହେ ବୁଧଜନେ !
ଚପଳ ଚପଳ ଚପଳ, ଝରିଲା ନୀହାର ଶିଶିର,
ମଧୁଗନ୍ଧେ ଅକୁଳ ଭ୍ରମିଲେ ଅଳିକୁଳ ପ୍ରଫୁଲ୍ଲ ଫୁଲ କାନନର,
ହେ ବୁଧଜନ ! ୩

ନବୀନ ଦିନନାଥ କଲା ହେମେ ରଞ୍ଜିତ ପର୍ବତ ତରୁ ଗୃହ ଶିର,
ଉର୍ଦ୍ଧ୍ୱେ ନୟନ ରଖି ନଳିନୀ ହାସ୍ୟମୁଖୀ ନିରେଖି ଗଗନେ ମିହିର,
ହେ ବୁଧଜନ !
କୁସୁମକୁଳ ଅସ୍ୟ ତୋଳି, ସ୍ନିଗ୍ଧ ଶିଶିର ଅଙ୍ଗେ ବୋଳି,
ହୋଇଲେ ହସ ହସ ଦାନକର ସୁବାସ ଦୋଳାଇ ବାତେ ବୃନ୍ତ-ଦୋଳି
ହେ ବୁଧଜନ ! ୪

ଶର୍ବରୀସହଚରୀ ନିଦ୍ରା ବିଷାଦେ ଫେରି ଶର୍ବରୀ ସଙ୍ଗେ ଗଲା ଗୋପୁଁ,
ପରିହରି ଶୟନ ଉଠିଲେ ଗୋପଜନ ସେବନ କଲା ପରି ଅପୁ
ହେ ବୁଧଜନ !
ଅର୍ଦ୍ଧମୁଦ୍ରିତ ନୟନରେ, ପ୍ରବେଶ ନନ୍ଦ ସଦନରେ,
ବିଷାଦ-ଚ୍ଛାୟାମୁଖେ ଯେପନ୍ତେ ଦିବସ ମୁଖେ ଘନ ଖେ ଘୋଟିଣି ସଞ୍ଚରେ
ହେ ବୁଧଜନ ! ୫

ଯେତେକ ବୟସକ ବୃଦ୍ଧା ବାଳା ଯୁବକ ବାଳକ ବାଳିକା ସକଳେ,
ପ୍ରତିବେଶୀ ଯେତେକ ପ୍ରକାଶି ଗୁରୁଶୋକ ହୋଇଲେ ତୁଣ୍ଡ ନନ୍ଦଆଳେ
ହେ ବୁଧଜନ !
ନନ୍ଦ ସଦନବାସୀ ଜନ, ଉନ୍ନିଦ୍ରେ ତେଜିଲେ ଶୟନ,
ମାତାଙ୍କ ଚକ୍ରପାଣି ଡାକିଲେ ପିକଜିଣି 'ଜନନି !' ଉଠ ଗୋ ବହନ
ହେ ବୁଧଜନ ! ୬

ଉଠିଣ ଯଶୋମତୀ ତଷାଦେ ପ୍ରାତଃକୃତ ସମାପ୍ତି ସୁତଙ୍କର କଲେ,
ସର ନବଣୀ ଛେନା ଅଦ୍ୱ ସୁଖାଦ୍ୟ ନାନା ବସାଇ କୋଳେ ଭୁଞ୍ଜାଇଲେ
ହେ ବୁଧଜନ !
ସୁଢେଳିଲେ ଶାମଳ କୁନ୍ତଳ, ବାନ୍ଧିଲେ ଦେଇ ଗୁଞ୍ଜମାଳ,
ନାନାଜାତି କୁସୁମ କଳାପୀ ପୁଚ୍ଛ ଜାମ- ପତ୍ରରେ ନିର୍ମିଣିଲେ ଚୂଳ
ହେ ବୁଧଜନ ! ୭

କର୍ଣ୍ଣେ ଦେଲେ କୁଣ୍ଡଳ କିବା ଭାନୁ ମଣ୍ଡଳ ଉଜ୍ଜ୍ୱଳ ନୀଳ ଗଗନରେ,
ଉଜ୍ଜ୍ୱଳ ସିନ୍ଧୁଫଳ ଦେଲେ ନାସିକା ତଳ କଜ୍ଜ୍ୱଳ ଦେଲେ ନୟନରେ
ହେ ବୁଧଜନ !
ଲଲାଟେ ଗୋରୋଚନା ଫୋଟା, ଚୂଳର ମୂଳେ ହେମଝୁମ୍ପା,
ନାସାରେ ସୁଚନ୍ଦନ ଶତା କଲେ ଲେଖନ କଣ୍ଠରେ ହାର ଜିଣି ଶମ୍ପା
ହେ ବୁଧଜନ ! ୮

ରତନମାଳା ହୃଦେ ଯେହ୍ନେ ଧନୁ ନୀରଦେ ଅଙ୍ଗଦେ ସୁବାହୁ ମଣ୍ଡିତ,
କଟୀତଟେ କିଙ୍କିଣୀ ପୀତାମ୍ବର କାଛେଣୀ ସ୍କନ୍ଧରେ ଉତ୍ତରୀୟ ପୀତ,
ହେ ବୁଧଜନ !
ହସ୍ତରେ ସୁଷମାନିଳୟ, ସୁରତ୍ନ ନିର୍ମିତ ବଳୟ,
ତାଳାଙ୍କୀ ପୀତବାସ ଏରୂପେ ହେଲେ ବେଶ ମୋହଣ ସକଳ ହୃଦୟ
ହେ ବୁଧଜନ ! ୯

ସମ୍ପୂର୍ଣ୍ଣ ହୋଇଁ ବେଶ ହୋଇ ଅସେ ପ୍ରବେଶ କ୍ରମଶଃ ହେଲ ଶୁଭମସ୍ତୁ,
କରି ଘଟ ସ୍ଥାପିତ ସଧବା ଗୋପୀ ସାତ ଦ୍ରବତ ବସ୍ତୁର ସମସ୍ତ
ହେ ବୁଧଜନ !

ତାହାଙ୍କ ବନ୍ଦାଇଲେ ଅସି, ଅଶୀର୍ବଚନମାନ ଭାଷି,
ହେଲେ ଶୋକେ ବହ୍ୱଳ ବରଷି ଅଶ୍ରୁଜଳ ଚୁମ୍ବିଲେ ବେନା ମୃଗଶଶୀ
ହେ ବୁଧଜନ ! ୧୦

ଯଶୋଦା ଶୋକାକୁଳେ ଶ୍ୟାମଙ୍କୁ ଘେନି କୋଳେ ଅନଳେ ପ୍ରଦକ୍ଷିଣ କରି,
ହେଲେ ଉଭା ମଉନେ ବିଷାଦିତ ବଦନେ ନୟନେ ଝରି ଅଶ୍ରୁଧାର
ହେ ବୁଧଜନ !

ରାମଙ୍କୁ ନନ୍ଦ କୋଳେ ଘେନି, ବସନେ ପୋଛି ନେତ୍ରବେଣି,
କହିଲେ, "ଗୋ ମହର୍ଷି ! ଗମନକାଳ ଅସି ବିଗତ ପର ହୋଇଲାଣି
ଗୋ ପ୍ରିୟତମେ !" ୧୧

ଏମନ୍ତ କହି ନନ୍ଦ ପୁରତେ ମନ୍ଦ ମନ୍ଦ ଚଳିଲେ ହଳୀ କୋଳେ ଧରି,
ତା ପଛେ ଯଶୋମତୀ କୋଳେ କରି ଶ୍ରୀପତି ଗମିଲେ ଜୟ-ଗୀତ କରି
ହେ ବୁଧଜନ !

ଯଶୋଦା ପଛେ ଗୋପଜନେ, ଅଇଲେ ସଧୀର ଗମନେ,
କାନ୍ଦିଲେ ଯଶୋମତୀ କାନ୍ଦିଲେ ବ୍ରଜପତି ସକଳେ ମିଳିଲେ କ୍ରନ୍ଦନେ
ହେ ବୁଧଜନ ! ୧୨

ଯଶୋଦା ଗୋକୁଳେଶ ଅସି କଲେ ପ୍ରବେଶ ଅବାସ ସିଂହଦ୍ୱାର ପାଶେ,
ଅଶ୍ୱ ଯୋଚି ଅକ୍ରୂର ଅଣିଲା ରଥବର ସତ୍ୱର ମନର ହରଷେ,
ହେ ବୁଧଜନ !

ନନ୍ଦ କୋଳରୁ ସୀରପାଣି, ରଥରେ ବସାଇଲା ଅଣି,
ପୁଣି କଂସଉଗର ଯଶୋମତୀ ଛାମୁର ସଧୀରେ ପ୍ରକାଶିଲା ବାଣୀ
ହେ ବୁଧଜନ ! ୧୩

“କିପାଇଁ ବ୍ରଜରାଣି ! ଶ୍ୟାମକୁ କୋଳେ ଘେନି ଅବ ନୀଳପନେ ରହିଛ,
ଦେଇ ତାଙ୍କୁ ମେଲାଣି ରଥେ ବସାଅ ଅଟି କି ଘେନି ବିଳମ୍ବ କରୁଛ
ଗୋ ବ୍ରଜେଶ୍ୱରି !

ବ୍ରଜୁଁ ମଥୁରା ବହୁପଥ, କଂସ ଚାହିଁଣି ଥିବେ ପଥ,
ହେଲେ ଢାଳ ବିଗତ କୋପିବ ନୃପନାଥ ବିଅର୍ଥ ଘଟିବ ଅନର୍ଥ
ଗୋ ବ୍ରଜେଶ୍ୱରି !” ୧୪

ଶୁଣି ଉଗର ବାଣୀ କହିଲା ବ୍ରଜରାଣୀ, “ମେଲାଣି କାହ୍ନୁକୁ ନ ଦେବି,
କଂସର ନିମନ୍ତ୍ରଣ ପାଳିବେ ନନ୍ଦରାଣି ମୁଁ କିପାଁ କଂସକୁ ଡରିବି,
ହେ କଂସଦୂତ !

ମୋ ସୁତେ ଅଚିନ୍ତ୍ୟ ବାଳକ, କଂସେ ତାଙ୍କର କି ସମ୍ପର୍କ,
କିପାଁ ମଥୁରାରୁ କରୁଛନ୍ତି ଅନ୍ୟାୟ ନ ଲୋଡ଼ି ଗୋପର ନାୟକ
ହେ କଂସଦୂତ !” ୧୫

ଯଶୋମତୀ ଆରତ ଦେଖିଣ କଂସଦୂତ ବିନୀତ ବଚନେ କହିଲା,
“ନ କର ମନେ ଭୟ ପେଷ ବେନି ତନୟ ସମସ୍ତ ଯିବାର ଗଢ଼ିଲା
ଗୋ ବ୍ରଜେଶ୍ୱରି !

ଗୁରୁଦାନକୁ ପଥ ଚାହିଁ, ଥାଅ ଏ ଗୋପପୁରେ ରହି,
ଦେଖି ଧନୁଯଜ୍ଞୋତ୍ସବ ଗୁରୁଦାନେ କେଶବ ଆସିବେ ଏ ସତ୍ୟ ଅଟଇ,
ଗୋ ବ୍ରଜେଶ୍ୱରି !” ୧୬

ଅକ୍ରୂର ଆଶ୍ୱାସନେ ଧଇର୍ଯ୍ୟ ଧରି ମନେ ମଜନେ ରଥପାଶେ ଆସି,
ପୋଛୁ ଶାଶ୍ରୁ ନୟନ ସମ୍ଭାଳିଣ ରୋଦନ ନନ୍ଦନ ରଥରେ ନିବେଶି,
ହେ ବୁଧଜନ !

ସମ୍ବୋଧି କହିଲ, “ରେ ରାମ ! ତୋଠାରୁ ଅଟ ଶିଶୁ ଶ୍ୟାମ,
ସେ ତ ଅଧୀର ଅଟ ନାହିଁ ତାହାର ଭୀତ ଦୁସ୍ତର ଅଟ କଂସ ଧାମ
ରେ ନୀଳାମ୍ବର ! ୧୭

ପ୍ରବାସେ ସାବଧାନ ହେବୁ ରେ ସଙ୍କର୍ଷଣ ଭୁଆଁଣ ନ କରିବୁ ଚଳି,
ଅସଂଖ୍ୟ ଦୁଷ୍ଟାସୁର ଅସଂଖ୍ୟ ନରବର କଂସର ଧାମେ ଛନ୍ତି ମିଳି
ରେ ନେଜନିଧି !

କରିବୁ ସଦା ଶିଷ୍ଟାଚାର, କହିବୁ ସଦା ମିଷ୍ଟ ଗିର,
ଅରେ ମୋ ଶେଖରଙ୍ଗ ନ ତେଜ ଭ୍ରାତା ସଙ୍ଗ କୁସଙ୍ଗ କରିବୁ ଅନ୍ତର
ରେ ନେଜନିଧି !" ୧୮

ଅଶ୍ରୁମୟ ଈକ୍ଷଣ ଅକ୍ରୂର ପ୍ରତି ପୁଣ ପ୍ରେରଣ କରି ନନ୍ଦରାଣୀ
ତା କର ଧରି କରେ ଅତି କରୁଣସ୍ୱରେ କାତରେ ପ୍ରକାଶିଲେ ବାଣୀ
ହେ ବୁଧଜନ !

"ଦୂତ ! ମୁଁ ଅଟଇଁ ଦୁଃଖିନୀ, ମୋ ଧନ କେବଳ ଏ ବେନି,
ତୁମ୍ଭେ ଅଟ ମହତ ତେଣୁ କରେଁ ଅର୍ପିତ ମୋ ବତ୍ସ ତୁମ୍ଭ କରେ ଆଣି
ହେ କଂସଦୂତ ! ୧୯

ଯିବା କାଳରେ ପଥେ ମୋର ପୁତ୍ରଙ୍କୁ ରଥେ ପୂରତେ ଯତ୍ନେ ବସାଇବ,
କ୍ଷୁଧା ହେଲେ ଆହାର ତୃଷା ହୋଇଲେ ନୀର ଚତୁର କରି ତାଙ୍କୁ ଦେବ
ହେ କଂସଦୂତ !

କ୍ଷୁଧା ଯେ ନ ପାରନ୍ତି ସହି, ବଶେଷେ ଗଠୋଳ କହ୍ନାଇ
ଆହା ମୋ ବେଣୁପାଣି ତୋହର ମନ ଜାଣି ନବଣୀ କେ ଦେବ ଭୁଞ୍ଜାଇ
ରେ ନେଜନିଧି ! ୨୦

ନିଜ କରେ ଭୋଜନ ସ୍ୱକରେ ଆଚମନ ନନ୍ଦନ ମୋର ନ ଜାଣନ୍ତି,
ସ୍ନେହେ ବ୍ରଜନନ୍ଦନେ ତାଙ୍କୁ ଭୁଞ୍ଜାନ୍ତି ବନେ ସଦନେ ମୋ କୋଳେ ଭୁଞ୍ଜନ୍ତି,
ହେ କଂସଦୂତ !

ମଥୁରାପୁରେ ନାଗରସ୍ତ ହେବେ ମୋ ଅଜ୍ଞାନ ତନୟ
ମୋର ସୁତଙ୍କୁ ଯତ୍ନ କରିବ ଦୂତବର ମୁଁ ଶତ କହୁଛି ବିନୟ
ହେ କଂସଦୂତ !" ୨୧

ଅଜସ୍ର ନୀରଧାର ନନ୍ଦର ଶ୍ୱେତଶ୍ମଶ୍ରୁ ଧଉତ କରି ବକ୍ଷେ ଖସେ
ଅର୍ଦ୍ର କାଶକୁସୁମ ଝରଇ ଯଥା ଦ୍ରୁମ ସଘନ ଶରଦ ପ୍ରତ୍ୟୁଷେ
ହେ ବୁଧଜନ !
କଣ୍ଠେ ଗଦ୍‌ଦସ୍ୱରେ ବାଣୀ, କହିଲେ ଗୋପକୁଳମଣି,
ସୁତଙ୍କ ସୁଧାନନ ସ୍ନେହେ କରି ଚୁମ୍ବନ ରଖିଣ ଚିବୁକରେ ପାଣି
ହେ ବୁଧଜନ ! ୨୨

“ରେ ମୋ ପରମ ଜୀବ ବଳରାମ କେଶବ ଗୌରବ ବିଭବ ବିଗ୍ରହ
ଯେବେ ଅକ୍ରୂର ମତ ହୋଇ ଅତିବିନୀତ ସାକ୍ଷାତ କରି ଦଣ୍ଡଧାରୀ
ରେ ରାମ ଶ୍ୟାମ !
ଯେବେ ତ ଅଛ ଶିଶୁ ଅଟ, ରହିବ ଅକ୍ରୂର ନିକଟ
ଦୁରାଗ୍ରହ ଅସୁରେ ରୁଣ୍ଡ ମଥୁରାପୁରେ ଅଳ୍ପରେ ପାଡ଼ିବେ ସଙ୍କଟ
ରେ ରାମ ଶ୍ୟାମ !” ୨୩

ଏକାଳେ ଦାସ ଏକ ଆଣିଲା ଯେ ସୁପକ୍ୱ କଦଳ ରମ୍ଭା ଆଦି ଫଳ,
ପୂର୍ଣ୍ଣ କରି କନକ- ପାତ୍ରେ ନାନା ପିଷ୍ଟକ କନକ-କୁମ୍ଭେ ସ୍ୱଚ୍ଛଜଳ
ହେ ବୁଧଜନ !
ଦାସର ହସ୍ତୁଁ ତାହା ଆଣି, ଥୋଇଲେ ରଥେ ନନ୍ଦରାଣୀ,
କହି,“କ୍ଷୁଧା ସମ୍ଭବ ହେଲେ ପଥେ ଏ ଦ୍ରବ୍ୟ ଭୁଞ୍ଜିବ ରାମ ବେନୁପାଣି
ରେ ନିଜ କରେ !” ୨୪

ଶ୍ୟାମ ଯିବା ସନ୍ଦେଶ ବ୍ୟାପିଲା ଗୋପଦେଶ କୁଳିଶ ସଞ୍ଚାର ସଦୃଶ,
ଗୋପ ଗୋପଯୁବତୀ ପାସୋରି ନିଜ ସ୍ଥିତି ଧାଇଁଲେ ହୋଇ ଊର୍ଦ୍ଧ୍ୱଶ୍ୱାସ,
ହେ ବୁଧଜନ !
ଗୋପୀଙ୍କ ରାଜୀବ-ଚରଣ, ଭୁଲିଲା ବରଷ୍ଠା ଗମନ,
ତାହାଙ୍କ ଲଜ୍ଜାଭୟ ଦେଇଲା କି ବିଦାୟ ହୃଦୟୁ ଦେଶରୁ ବହନ,
ହେ ବୁଧଜନ ! ୨୫

କେହୁ ବ୍ରଜସୁନ୍ଦରୀ   କାଖେ କଳସ ଧରି   କୁଣ୍ଡରୁ ସରି କରି ଗତ,
ମଣ୍ଡିଥିଲ ସରଣି   ଶ୍ୟାମ ପ୍ରୟାଣ ଶୁଣି   ସେପଣି କୁମ୍ଭ ରଖି ଛିଡ଼
ହେ ବୁଧଜନ !

ଗୁରୁ ନିତମ୍ବ ପୟୋଧରେ,   ନିନ୍ଦ ଧାଇଁଲ ଖରତରେ,
ଧାଇଁଲ କୁମ୍ଭ ଢେନ   କେହୁ ଚନ୍ଦ୍ରବଦନୀ   ଅବନୀ କମ୍ପାଇ ପାଦରେ
ହେ ବୁଧଜନ ! ୨୬

କେହୁ ଢେନ ଅଞ୍ଜନ  ରଞ୍ଜୁଥିଲ ଖଞ୍ଜନ—  ନୟନ ଅଗେ ବିମ୍ବ ରଖି,
ଶୁଣି ଶ୍ୟାମ ଗମନ   ହୋଇ ଉଦ୍ଭ୍ରାନ୍ତମନ   ଅଞ୍ଜନପାତ୍ରକୁ ଉପେକ୍ଷି,
ହେ ବୁଧଜନ !

ନ ସାରି ଅଞ୍ଜନ ରଞ୍ଜନ,   ଧାଇଁଲ ନନ୍ଦର ସଦନ,
କେହୁ ମାର୍ଜ୍ଜନୀକରୀ   ଗମନ କଲା ତ୍ୱରୀ   ପାସୋରି ମନ୍ଦିର ମାର୍ଜ୍ଜନ
ହେ ବୁଧଜନ ! ୨୭

କେହୁ ଖରେ ଧାବନ   କରୁଁ ହୋଇ ଉଦ୍ଭ୍ରାନ୍ତ   ବସନ ଖସିପଡ଼େ ତଳେ,
କେହୁ ନ କରି ଶେଷ   କେଶପାଶ ବିନ୍ୟାସ   ବିଶେଷ ମନର ଅକୁଳେ
ହେ ବୁଧଜନ !

ଧାଇଁଲ ଯଥା ସୌଦାମିନୀ,   କେଶଦଳ ସ୍ୱ କାଦମ୍ବିନୀ,
ଘନଶ୍ୟାମ ବିଳାସ   ଲୋଭଇ ଘନରସ   ହା ଭୂଷ ଘୋର ମନ୍ଦଧ୍ୱନି
ହେ ବୁଧଜନ ! ୨୮

କେ ଡାକେ, "ସଖି ଆସ  ପେନ୍ଦି ଖଣ୍ଡେ ସୁବାସ ବିକଶିତ ବେଶେ କାର୍ଯ୍ୟ କିସ
ଏବେ ଭାଗ ସଦୃଶ   ହେବ ପିନ୍ଧିଲ ବାସ   ପ୍ରବାସ ଗଲେ ପୀତବାସ,
ଗୋ ପ୍ରାଣସହୃ !

ହେବଟି ଏ ବ୍ରଜ ଅନ୍ଧାର,   ଗଲେ ବ୍ରଜର ସୁଖାଧାର,
ଦାରୁଣ ନୃପବର   ଅଟେ ଯମ ବ୍ରଜର   ଅକ୍ରୂର କିଙ୍କର ଯେ ତାର
ଗୋ ପ୍ରାଣସହୃ !" ୨୯

କେ କହେ, "ଶୁଣ ଶୁଣ ଗଡ଼ି ଯାଉଛି କାଳ ଚଞ୍ଚଳ ଯଦି ଗୋ ନ ଯିବା,
ଶୁଣ ଯିବ ଅକ୍ରୁର ଘେନି ଶ୍ୟାମସୁନ୍ଦର ତାଙ୍କର ଭେଟ ନ ପାଇବା,
ଗୋ ପ୍ରାଣସହି !"

କେ ଡାକେ "ସଖି ରହ ରହ, ନ ପାରେଁ ଶୁଣି ତୋର ସହ,
ଏ ଅଟଇ ମନ୍ଦ ବାଟ କର ଗମନ ମଠ ନିକଟ ଅଛି ନନ୍ଦଗୃହ
ଗୋ ପ୍ରାଣସହି !" ୩୦

କେ ଘେନି ଶିଶୁ କୋଳେ ଧାଇଁ ମନ ବଳକେ କେ ଚଳେ ଶିଶୁକୁ ପକାଇ,
କାହାସ୍ତନ ଅଞ୍ଚଳ ଖସି ଲୋଟିଣ ତଳ ଯୁଗଳ ଚରଣ ଛନ୍ଦଇ
ହେ ବୁଧଜନ !
ଖସି ପଡ଼ିଲା ଅଳଙ୍କାରେ ଚଳେହେଁ କେହି ନ ଆଦରେ,
ବିଗଳିତ କବରୀ ପୁଷ୍ପେ ଲୋଟେ କାହାର ଉଦ୍ଧାର କୁସୁମ ନିକରେ
ହେ ବୁଧଜନ ! ୩୧

ଯେତେ ବ୍ରଜବାଳକ କରଣି ଡାକହାକ ଉତ୍ସୁକମନେ କରି ଗତି,
ଧାଇଁଲେ ଯୂଥେ ଯୂଥେ ରଖି କରି ପଶ୍ଚାତେ ଈଷିତେ ଯୁବକ ଯୁବତୀ
ହେ ବୁଧଜନେ !
. ଏରୂପେ ଗୋକୁଳ ନିବାସୀ, ମିଳିଲେ ନନ୍ଦଗୃହେ ଆସି,
ଠେଲାଠେଲି ନିବିଡ଼େ ହେଲେକ ଯିବା ବାଟେ ବିକଟେ 'ଉଠ' 'ଉଠ' ଭଣି
ହେ ବୁଧଜନ ! ୩୨

କେହି ଦେଖିବା ଆଶେ ଘନଜନତା ପାଶେ ମଞ୍ଚ ସନ୍ନିଧେ ଭ୍ରମଇ
ଉନ୍ନତଗ୍ରୀବ ହୋଇ ପ୍ରପଦେ ଭର ଦେଇ କେହି ବା ନେତ୍ର ବିସ୍ତାରଇ
ହେ ବୁଧଜନ !

କେହି ଆରୋହେ ଅଟ୍ଟ ଘରେ, ସୁଦୀର୍ଘ ପାଦପଶିଖରେ,
କେହି ଧରି ନିଃଶ୍ରେଣୀ ତ୍ୱରିତେ ଆଣି ଆରୋହେ ଅଟ୍ଟାଳିକାରେ
ହେ ବୁଧଜନ ! ୩୩

ମେଲାଣ ବ୍ରଜଜନ    ଶ୍ୟାମ ସୁଧାଳାପନ    ନୟନପଥେ କଲେ ପାନ,
ଅନ୍ୟ ଇନ୍ଦ୍ରିୟମାନେ ସେ ସୁଧାପ୍ରଲୋଭନେ ନୟନେ ଯାଇ କଲେ ସ୍ଥାନ
ହେ ବୁଧଜନେ !
ଏକାଳେ କଂସର ଚର,    ଧୀରେ ଚଳାଇ ରଥବର,
ହରଷମସୃଣରେ    ଜନଗହଳପଥେ    ଅକ୍ରୂରେ ଘେନିଣ ସଙ୍ଗରେ
ହେ ବୁଧଜନ ! ୩୪

କହି "ହା ବେଣୁପାଣି !" ମୂର୍ଚ୍ଛିତା ନନ୍ଦରାଣୀ, ଧରଣୀତଳେ ପଡ଼ିଲେଟି,
'ହା ରାମ' 'ହା ଗୋବିନ୍ଦ'    କହି କାନ୍ଦିଲେ ନନ୍ଦ    ବସିଣ ଯଶୋଦା ନିକଟି
ହେ ବୁଧଜନ !
କପାଳେ କରି କରାଘାତ,    କହି "ହା କି କଲି ବିଧାତଃ"
କାନ୍ଦିଲେ କୋଳାହଳେ ବ୍ରଜବାସୀ ସକଳେ ସକଳେ କରି ଅଶ୍ରୁପାତ
ହେ ବୁଧଜନେ ! ୩୫

ଥୋକେ ବରଜଜନ  କରି କରି କ୍ରନ୍ଦନ  ଯଶୋଦା ନନ୍ଦ କର ଧରି,
ଫେରିଲେ ଧୀରେ ଧୀରେ  କହି ସାନ୍ତ୍ୱନା ଗିରି  ନନ୍ଦର ବାସ ଲକ୍ଷ୍ୟ କରି
ହେ ବୁଧଜନ !
ଶ୍ରୀହୀନ ନନ୍ଦର ଭବନ,    ଯେସନ ନଳିନ କାନନ,
କମଳାନନ୍ଦକାରୀ    ତରଣିରେ ଅଭାବେ    ଯେ କାଳେ କରନ୍ତି ଗମନ
ହେ ବୁଧଜନ ! ୩୬

ଯେବେ କ୍ରୂର ନିଷାଦ  ଶାବକେ ଧରି ବନ୍ଧି ଆନନ୍ଦେ ଗମେ ନିଜ ବାସେ,
ଶୋକେ ହୋଇ କାତର  କରନ୍ତି ଆର୍ତ୍ତସ୍ୱର  ବସିଣ ଶୂନ୍ୟନୀଡ଼ ପାଶେ
ହେ ବୁଧଜନେ !
ଯେସନେ କପୋତୀ କପୋତ,    ଶାବକ ଶୋକରେ ଶୋକାର୍ତ୍ତ,
ତେସନେ ଯଶୋମତୀ    ଗୋପାଳକୁଳପତି    କାନ୍ଦନ୍ତି ହୋଇଣ ଅରତ
ହେ ବୁଧଜନ ! ୩୭

# ଦ୍ୱାବିଂଶ ଛାନ୍ଦ

ରାଗ— କାଳୀ *

## ରାଧାଙ୍କର ସ୍ୱପ୍ନରେ କୃଷ୍ଣ ଦର୍ଶନ ଓ ଶୋକ

ମଧ୍ୟାହ୍ନ କାଳେ ନ ରହି ଆଳେ ତମାଳମାଳେ ଅସି,
ଧନେ ମଞ୍ଜନେ କି ଭାଳେ ମନେ ରାଧିକା ଶଶି-ହାସୀ । ୧
ହୋଇଛି ଜଳ ଅତନୀଶୋଭ ଧର ତମାଳ-ଡାଳ,
ଘୋର ତମିରେ ଶୋଭୁ କି କରେ ଶଶାଙ୍କ କର-ଜାଳ । ୨
ନୟନ ରମେ ଲୋଟି ଚରମେ ଗୁଛି କୁନ୍ତଳଦଳ,
ପଡ଼େ କି ଖସି ବାଟ ପ୍ରକାଶି ଯମୁନା ନଦୀଜଳ । ୩
କଛି ଚିକୁର ତରଙ୍ଗି ଜର ଚଳେ ସମୀର ମେଳେ,
କି ଅବା ନୀଳ ଜଳୋର୍ମିମାଳ ଗିରି ବୁଡ଼ାଇ ଖେଳେ । ୪
ମୁଖ ମଳିନ ବାସି-ନଳିନ ଯେହ୍ନେ ଯମୁନା ଜଳେ,
ନୟନ-ନୀର ଯଥା ଶିଶିର-ବିନ୍ଦୁ ନିକର ଗଳେ । ୫
ପାଦ ଅଙ୍ଗୁଳେ ଲେଖଇ ତଳେ କୁଞ୍ଚିତ ନଡ ମଥା,
ବିରହାନଳେ ତା ରୂପ ଝୁଲେ ହେମ ଅନଳେ ଯଥା । ୬
ନ ପାଇ ବାସେ ତାଙ୍କୁ ବିରସେ ଖୋଜି ଖୋଜିଣ ଅଳୀ,
ହେଲେ ପ୍ରବେଶ ଯହିଁ ଅବେଶ କରଇ ବ୍ରଜବାଳୀ । ୭
ଅଳୀଙ୍କି ଦେଖି ପଦ୍ମେନ୍ଦୁମୁଖୀ ଦୁଃଖିତସ୍ୱରେ ଭାଷେ,
"ଅଜ କି ସହି ! ଦେଖିବି ନାହିଁ ପୀତବାସଙ୍କୁ ପାଶେ । ୮
ମଧୁର ହସି ମୋ ପୁରେ ଅସି ମୋ ପାଶେ ବସି ଶେଯେ,
ମୋ ଉରେ ଉର ଦେଇ ମୋ କର ଧରି ଧରରେ ସେ ଯେ ।" ୯
କହିଲେ ଧୀରେ, "ରସନିଧିରେ ! ହୋଇଛି ମଧ୍ୟ ଦିବା,
ଅସ ତମାଳ-ମାଳ ଶୀତଳ ଅନିଳ ନିଷେବିବା ।" ୧୦

---

* ବୈଦେହୀଶ ବିଳାସ "ବିଜୟୀ ଶ୍ରୀର ବିଜୟ କର" ରାଗେ (୧) ସମ୍ବୃଦ୍ଧିଳଦଶ

ମୁଁ ତାଙ୍କ କର ଧରି ସତ୍ୱର ଅସିଲି ତାଙ୍କ ସଙ୍ଗେ,
ଗଲେ ସେ କାହିଁ ମୁଁ ପାଉ ନାହିଁ ଲୁଚିଛନ୍ତି ବା ରଙ୍ଗେ । ୧୧
ମୁଁ ମାନସରେ ନିଶି ବାସରେ ଚିନ୍ତିଲି ତାଙ୍କୁ ସିନା,
କଟିଲ କାଳ ଏବେ ମୋ କାଳ ଯଶୋଦାବାଳ ବିନା ।" ୧୨
କହେ କେ ଅଳୀ, "ସତତ ଭାଳି କାଳି-ଗଞ୍ଜନେ ମନେ,
ଅରେ ନବୀନା ! ତାହାଙ୍କୁ ସିନା ଦେଖିଛୁ ତୁ ସ୍ୱପନେ ।" ୧୩
ନାୟୀ ରତନ ଅଳୀ ବଚନ ଶୁଣିଣ କହେ ବାଣୀ,
"ନ ହୁଏ ପ୍ରତେ ସ୍ୱପନେ ସତେ ଦେଖିଲି ବେଣୁପାଣି । ୧୪
ସଖି ! ଯେବେ ସେ ଥିଲେ ମୋ ପାଶେ ଏ ଗ୍ରୀଷ୍ମ ଋତୁଗଣ,
ଦେବା ସର୍ବସ୍ୱ ସେବକୀ ପରି ସେବିଲେ ମୋ ଚରଣ । ୧୫
ଋତୁ ସକଳେ ଅସି ତ ଗଲେ ପ୍ରାଣେଶ ନ ଅସିଲେ,
ସାବିତ୍ରୀପତି ମୋର ଦୁର୍ଗତି ଲେଖିଛନ୍ତି ବା ଶିଳେ ।" ୧୬

ବଙ୍ଗଳାଶ୍ରୀ *

"ହେଲା ବିଷମୟ ବିଷମ ସମୟ ଗ୍ରୀଷମ ଅବନୀତଳେ,
ହେଲା ଦିନକର କର ଖରତର ଶର କି ସିକ୍ତ ଗରଳେ । ୧୭
ମଲ୍ଲିକା ରଙ୍ଗେ ଖେଳିଲା ତରଙ୍ଗେ କରି ପିପାସିଙ୍କି ଭ୍ରାନ୍ତି,
ସଖୀଗଣ ଧରି ଧୂଳିଖେଳ କରି ବହିଲା ପ୍ରଚଣ୍ଡ ବାତ । ୧୮
ଦଶେ କଣ୍ଟକମୟ-ବାସେ ଶୋଭାମୟ ପାଦପ ବଲ୍ଲୀସଞ୍ଚୟ,
ହସିଲେ ହରଷେ ରସି ପ୍ରେମରସେ ଦଶେ କାର ଶୋଭାମୟ । ୧୯
ସୁରଙ୍ଗ କୋମଳ ଦଳେ ସୁଶୀତଳ ମଞ୍ଜୁଳ କୁଞ୍ଜସଦନେ,
ସୁମରଣ ଶିବା ବନ୍ଧୁର ଅସିବା ପଥ ରଖିଲି ନୟନେ । ୨୦
ଦେନି ମଳୟଜ ଘନସାରରଜ ସିଞ୍ଚିଣ ବାରିଜ-ଶେଯେ,
ସୁରଭିଅମ୍ବର କୁସୁମ ନିକର ବୋଲି ବଧୂ ଚନ୍ଦନେ ଯେ । ୨୧

---

* ବୈଦେହୀଶ ବିଳାସ "ବୋଇଲେ ସୀତା ସିତାଂଶୁମୁଖୀ" ସ୍ୱରେ

ରଚିଲି ବ୍ୟଜନ ଗୃହଦୁଆ ତୋରଣ ମଲ୍ଲିକା ଚମ୍ପକମାଳେ,
ସୁଗନ୍ଧି ଉଶୀର ସୁଶୀତଳ ନୀର ସେବିଥିଲି ମଧ୍ୟାହ୍ନ କାଳେ । ୨୨
ଝେଢେ ଚଲି ମନେ ଯମୁନା ପୁଳିନେ ସାୟାହ୍ନେ ଶୀଳା ଅସତନ,
ବନ୍ଧୁ ପାଶେ ବସି ପ୍ରେମଭରେ ହସି ରସିବ ବାତ ସେବନେ । ୨୩
ଗ୍ରୀଷ୍ମ ଅସିଛରି ଗଲା ପୁଣି ଫେରି ନ ଅହିଲେ ପ୍ରାଣଧନ,
ଆସିବେ ନାହିଁ କି ବନ୍ଧୁ କହ ସଖି ! ନିରବେ ଝୁରୁଛି ମନ । ୨୪
ମୋର ଅସ୍ତମିତ ନୋହିଲା ତ ମିତ ! ପ୍ରଚଣ୍ଡ ବିରହ-ଭାନୁ,
ମସ୍ତିଚଢା ଦୃଶ ବନ୍ଧୁମିଳନାଶ ନାଶ ନୋହୁଛି ମୋ ମନୁ । ୨୫
ଆସିଥିଲା ଦୂତ ସେ କହି ଗଲା ତ "ଲଭିବ ଶ୍ୟାମଙ୍କୁ ପୁଣି,"
ନ ଯାଏ ଜୀବନ ନ ସରଇ ଦିନ ସେ କଥାକୁ ଗୁଣି ଗୁଣି । ୨୬
ଅଉ କି ଚନ୍ଦନ-ଉତ୍ସବେ ମଗନ ହେବ ପୁଣି ବନ୍ଧୁ ସଙ୍ଗେ,
ଚନ୍ଦନରେ ଭରି ହେମ ପିଚକାରୀ ମାରିବ ସେ ନୀଳଅଙ୍ଗେ ।" ୨୭

କଲହଂସ କେଦାର *

"ହୁଅନ୍ତେ ସହଚରି ! ନିଦାଘ ଗତ,
ଆସି ବରଷା କାଳ ହେଲା ଅଗତ ଗୋ ।
କାଦମ୍ବିନୀ ବକାଳୀମାଳିନୀ ଭୀମା,
ଗର୍ଜି ଘୋଟିଲା ନଭ ଛୁଡ଼ାଇ ସୀମା ଗୋ । ୨୮

ଚଡ଼ିଲା ନିରନ୍ତର ଆସାର ବାରି,
ଦିବା ଯାମିନୀ ଭେଦ ନୋହିଲା ବାରି ଗୋ ।
ଘନକୋଳେ ହସିଲା ସଉଦାମିନୀ,
ସେ ନୋହେ ଅମ୍ଭ ପରି ହତ ଭାଗିନୀ ଗୋ । ୨୯

ବାରିବାରଣ ଭାଙ୍ଗି ସରିତକୂଳ,
ଗଢିଲେ ବନ୍ଧୁ ପାଶେ ଲଙ୍ଘିଣ କୂଳ ଗୋ ।

---

* ରସକଲ୍ଲୋଳ "କୁଞ୍ଜକୁଟୀରେ ଫୁଲ ଶେଯ ଉପରେ" ରାଗେ

ସମାଜ-ବାରଣ ତ ଅଲଙ୍ଘ୍ୟ ଅଛି,
ତେଣୁ ସିନା ମୀନା ଏ ଗୋପଯୁବତୀ ଗୋ । ୩୦
ଆଳାପିଲେ କଳାପୀକଳାପ ଷଡ୍ଜ,
ଧୈବତ ଆଳାପିଲେ ମଣ୍ଡୂକବ୍ରଜ ଗୋ ।
ପିକ ପଞ୍ଚମତାନ ହୋଇଲା ତୁନି,
ସାଧୁ ଶୁଣିଲେ ଯଥା ଦୁର୍ଜ୍ଜନ ବାଣୀ ଗୋ । ୩୧
କଦମ୍ବକଦମ୍ବରେ ମନ ଆକୁଳି,
ଫୁଟିଲେ ଫୁଲ କିବା ହେମବାଟୁଳୀ ଗୋ ।
କାମ ସର୍ଜ୍ଜିଲି ପାଞ୍ଚ ଗୋପିନୀ ନାଶ,
ପାଶରେ ନ ଥିବାରୁ ହେମାଙ୍ଗବାସ ଗୋ । ୩୨
ଘନ କଲା କି ରଙ୍ଗ ମୋ ସଙ୍ଗେ ସହି !
ସେ ଅସେ ବକ୍ଷେ ବନମାଳାଏ ବହି ଗୋ ।
ମୁଁ ତାକୁ ଶ୍ୟାମ ଭ୍ରମେ ପରଶେ ସଖି !
ଗୃହେ ନିରେଖି ଦଣ୍ଡେ ପଡ଼ ଚମକି ଗୋ । ୩୩
କାହୁଁ ପାଇବ ଘନ ନିଭଙ୍ଗଠାଣି,
କାହୁଁ ପାଇବ ସୁଧାମୟ ଗୃହାଣି ଗୋ ?
କଳାପରେ ମଣ୍ଡିଲେ ଶ୍ରୀଧରପାକ,
କଳାପୀ ଶୋଭା ଧରି ପାରେ କି କାକ ଗୋ ? ୩୪
ପ୍ରାବୃଟ ରସରସଂ ମଦନ ଘୁମର,
କଦମ୍ବ ଡାଳେ ଦୋଳାସନକୁ ଧର ଗୋ ।
କାନ୍ଦ କାନ୍ଦ ମୁଁ ହେଲି ଧୈର୍ଯ୍ୟବିହୀନ,
କାନ୍ଦିଲେ ମୀନଟି କି ସରେ ଦୁର୍ଦ୍ଦିନ ଗୋ ? ୩୫
ନେନ୍ତେ ଅସି ଗଲା ବରଷାକାଳ,
ନ ଅସିଲେ ବ୍ରଜେ ଯଶୋଦାବାଳ ଗୋ ।

---

(୧) ଝୁଲଣ ଯାତ୍ରା

ବ୍ରଜ କି ତାଙ୍କ ମନୁ ଗଲା ପାସୋରି,
କିପାଁ ନିର୍ଦ୍ଦୟ ହେଲେ ନନ୍ଦ କିଶୋର ଗୋ । ୩୬
କ୍ଷଣ କ୍ଷଣରେ କ୍ଷଣପ୍ରଭା ଯେସନ,
ବିନାଶି ତମ କରେ ତମ ବର୍ଦ୍ଧନ ଗୋ ।
ପ୍ରାଣବନ୍ଧୁ ଅସିବା ଆଶା ତେସନେ,
କ୍ଷଣେ ଜଳି ନିରାଶା ବଢ଼ାଏ ମନେ ଗୋ ।" ୩୭

ମଙ୍ଗଳ *

"ଋତୁଅନ୍ତେ ଅତି ବିରଳ ଘନକାଳ ଶେଷ,
ରୁଚିର ଶରଦକାଳ ହେଲା ପରବେଶ । ୩୮
ଅତି ରମଣୀୟ ଶୋଭା ଧରିଲା ପ୍ରକୃତି,
ଚଣ୍ଡୀବେଶ ଛାଡ଼ି ଶିବା ହେଲେ କି ପାର୍ବତୀ ? ୩୯
ତାରାପତି ତାରାତତି ଭାତି ନଭସ୍ଥଳେ,
ଢାଳିଲେ କର-ଅସାର ନିଶାରେ ଭୂତଳେ । ୪୦
ଫୁଟିଲେ ଶାରଦ ଫୁଲ୍ଲ ରମ୍ୟ ବନସ୍ଥଳେ,
କୁମୁଦ ରାଜୀବରାଜି ରାଜିଲେ ଜଳେ । ୪୧
ଯେସନ ଚନ୍ଦନ ରଞ୍ଜେ ନୀଳ-କଳେବର,
କେବେ କେବେ ନଭେ ମେଘଖଣ୍ଡ ଶୋଭାକର । ୪୨
ଅତି ଦାନେ ରିକ୍ତକର ଦାନଶୀଳ ପରି,
ଅଳ୍ପ ବରଷିଲା ଘନ ମନ୍ଦ ଧ୍ୱନି କରି । ୪୩
ନୟନେ କେଦାରରାଜି ଢାଳନ୍ତି ଅମୀୟ,
ଶ୍ୟାମଳ ଶସ୍ୟାବଳୀରେ ହୋଇଲେ ରମଣୀୟ । ୪୪
ଯମୁନାତଟ କାନନେ ଶାରଦଲତିକା,
ନବୀନ ପଲ୍ଲବମୟୀ ହେଲେ ଉତ୍କଳିକା । ୪୫

---

* ଲାବଣ୍ୟବତୀ "ଏଥୁଅନନ୍ତରେ ଯେ ଯାମିନୀ ହେଲା ଶେଷ ' ସ୍ୱରେ

ଖେଳିଲେ ମତ୍ତ ମରାଳେ ଯମୁନା ବେଣୀରେ,
ଧ୍ୱାଉଳୀପଙ୍କ୍ତି କି ଘଟେକ ଧରଣୀବେଣୀରେ । ୪୬
ଶାରଦୀୟ ଶୋଭା ଧର ରମ୍ୟ ବୃନ୍ଦାବନ,
ଶାରଦୀୟ ରସଭାବ କଲା ଉଦ୍ଦୀପନ । ୪୭
ରାସରସ-ରସିକର ବନା ସହଚର !
ସେ ଭାବ ଫୁଟି ଉଠିଲା ବନେ ଫୁଲ ପର । ୪୮
ତାଙ୍କ ଅଗମନ ପଥ ମୁଁ ରହିଲି ଗୃହିଁ,
ମଧୁର ଶରତ କାଳୁ ରହିଲା ତ ନାହିଁ ।"୪୯

କୁମ୍ଭ କାମୋଦୀ *

"ହେମନ୍ତ କାଳ ଅସି ହେଲା ପ୍ରବେଶ ଶରଦେ ବଗଦେ,
ଅରଣ୍ୟ-ଶସ୍ୟନେ ପ୍ରକାଶିଲା ଜାଡ଼ ଖେଡ଼ି ଏ ଜଗତେ । ୫୦
ଜଳ ଅନଳରୁ ଛାଡ଼ିଲା ଅଦର ବଢ଼ିଲା ଅନଳେ,
ବନ୍ଧୂପ୍ରୀତବ୍ରତ ଶିକ୍ଷା କଲେ ଅବା ମହୀରେ ସକଳେ । ୫୧
ରବିର ବରଦେ ଜଗତର ଛାଡ଼ିଲା ନିଶ୍ୱାସ ଅକୁଳେ,
ବନ୍ଧୁ ବନା ଯଥା ମୁଁ ହତଭାଗିନୀ ଅକୁଳା ଗୋକୁଳେ । ୫୨
ଜାଳିଲା ତପନଂ ହେମନ୍ତ-ଦହନ ପଙ୍କଜ-କାନନେ,
ଦହୁଛନ୍ତି ଯଥା ବନ୍ଧୁ ଗୋପିନୀଙ୍କି ବିରହ-ଦହନେ । ୫୩
ପୁଣି ଖେଳରାଜ ଅଣିଣି ପ୍ରାବୃଟ ତୋଷିବ ନଳିନୀ,
ଗୋପୀନାଥ ସତେ ନ ହୁଏ ପରତେ ତୋଷିବେ ଗୋପିନୀ । ୫୪
ଅସିଣି ହେମନ୍ତ ହେଲା ପୁଣି ଗତ ନଇଲେ କିଶୋର,
ନିଷ୍ଠୁର ବରଜ କଥା ତାଙ୍କ ମନୁ ଗଲା କି ପାସୋର ।"୫୫

---

* ବୈଦେହୀଶ ବିଳାସ "ବିନାଶ ନାସା ଶ୍ରବଣ ସୂର୍ପଣଖା" ରାଗେ
(୧) ସୂର୍ଯ୍ୟ ବିଦୁମାନଙ୍କର ବର୍ଣ୍ଣା ଅଛନ୍ତି ।

## ମୁଖାସ୍ତ *

"ହେମନ୍ତ ଅନ୍ତେ ଶିଶିର, ପ୍ରଚାର ତୁଷାର-ତୀର,
କଲା ଜୀବଙ୍କୁ ଅଧୀର ସେ, ଭେଦି ଶରୀର । ସଜନି ଗୋ । ୫୬

ଶୀତଭୟେ ଛନଛନ, ଛାଡ଼ି ଦୀର୍ଘ ନଭଃସ୍ଥନ,
ଦକ୍ଷିଣପଥେ ତପନ ସେ, କଲେ ଗମନ । ସଜନି ଗୋ । ୫୭

ସୁଦୀର୍ଘା ହୋଇ ଯାମିନୀ, ତୋଷିଲା କାନ୍ତ-ସଙ୍ଗିନୀ,
ବଢ଼ାଇଲା ବିରହିଣୀ ସେ, କର ଦୁଃଖିନୀ । ସଜନି ଗୋ । ୫୮

କୋମଳ-ହୃଦୟା ଉଷା, ଦେଖି ଦୁଃଖେ ବ୍ରଜଯୋଷା,
ଝଟିକା-ବିଷାଦ-ଦୃଶା ସେ, ଅମ୍ବୁ ସଦୃଶା । ସେ ହେଲା ଗୋ । ୫୯

ସମବେଦନାକୁ ସିନା, ପରଦୁଃଖ ଯତ୍ନେ ଚହ୍ନା,
ଲଳନା ମନ ବେଦନା ସେ, ଜାଣେ ଲଳନା । ସଜନି ଗୋ । ୬୦

ବିରହବତୀ ବିଶେଷ, ସହିଲେ ବିରହକ୍ଲେଶ,
ଯିବାରୁ ଛାଡ଼ି ବିଦେଶ ସେ, ପ୍ରିୟେ ଜୀବେଶ । ସଜନି ଗୋ । ୬୧

ଶ୍ୟାମ ବିନା ବୃନ୍ଦାବନ, ଯଥା ବ୍ରଜଧାମ ଜନ,
ହୀନ ଭୂଷଣ ବସନ ସେ, କଲା ଧାରଣ । ସଜନି ଗୋ । ୬୨

ଶୀତ ପୀଡ଼ା ହିରୁବାର, ବୋଲଏ ସେ ବଳିଆର,
ପୁଂସବର୍ଗେ ଅଧିକାର ସେ, ନାହିଁ କି ତାର । ସଜନି ଗୋ । ୬୩

ବ୍ରଜବାଳୀ ପରକାର, ହେଲା ଦଶା ପଙ୍କଜାର,
କେଶବ ବିନା ଅସାର ସେ, ଅଟେ ସଂସାର । ସଜନି ଗୋ । ୬୪

ଅସି ଗଲା ଶୀତ ମାସ, ବସନ୍ତ ହେଲା ପ୍ରକାଶ,
ନ ଅସିଲେ ପୀତବାସ ସେ, କଲେ ନିରାଶ । ସଜନି ଗୋ ।" ୬୫

---

* ବ, କ, "ଚଲେ ଯାଇ ଅବଲୋକ" ସ୍ୱରେ

ଗୈରୀ *

"ଏକାନ୍ତ କାନ୍ତ ଦୁରନ୍ତ                    ସୁଚେତନ କୃତାନ୍ତ ବନ୍ତ,
ବସନ୍ତ କୃତାନ୍ତବତ ଅଗତ ମିତ !
ପରିମଳ ସମାକୁଳ,                    ଅଳିକୁଳରେ ସଙ୍କୁଳ,
କୁସୁମକୁଳ ମୁକୁଳ ହେଲା ଅମିତ,
ସୁଧୀର ସୁଧୀର ସୁଧୀର,
ବହୁ ଦହିଲା ବିରହୀ କରି ଅଧୀର । ୬୬
ଜମ୍ବୀର ରସାଳ ଶାଳ                    ବକୁଳାଦି ପିଅଶାଳ—
ଦଳେ ମଞ୍ଜୁଳେ ରଞ୍ଜିଲେ ନିକୁଞ୍ଜବନ,
ଏ ମଧୁକରନିକର                    ମଧୁରିଲେ ଫୁଲ୍ଲକର,
କରି ଉଦ୍ଗାର ମଧୁର ଝଙ୍କାରସ୍ୱନ,
କୋମଳେ ଡାକିଲେ ଦୟୂଳେ
କାମୁକ କୋକିଳକୁଳ କଲେକି ଛଳ । ୬୭
ଶରତ ହେମନ୍ତ ଶୀତ                    ବରଷା ଗ୍ରୀଷ୍ମ ମିଳିତ,
ଘୃତ ମଧୁ ଦଧି ଗୁଡ଼ ଛୀର ଯେସନେ,
ସ୍ୱଦର୍ପେ ଦର୍ପକ ସଖା                    ଷିତିତଳେ ଦେଲା ଦେଖା,
ଗଲା ପୁଣି ଋତୁଙ୍କି ଜାଳି ଜ୍ୱଳନେ,
ନ ଆସିଲେ ନନ୍ଦକୁମର,
କଲେ ଘାତ ଏଥର ଅଥର୨ ପଥର । ୬୮
ଆଜ କି ଗୋ ସହଚରି !                    ବନ୍ଧୁ ସଙ୍ଗରେ ଚର୍ଚ୍ଚରୀ,
ଖେଳିବ ମୁଁ ପିଚକାରି ଭରି ସୁରଙ୍ଗେ,
ପାଇ ମଧୁ-ଋସରସେ                    ଉଲ୍ଲାସେ କୌତୁକବଶେ,
ପୁଣି ଆଣି ଦେବ ଫଗୁ ବନ୍ଧୁର ଅଙ୍ଗେ,

---

* ବୈ, ବ, "ବଉଲକୁ ଅଲଙ୍ଗନ" ବାଗେ
(୧) ପକ୍ଷୀ ବିଶେଷ । (୨) ଅକମ୍ପ ।

ତାଙ୍କୁ ବେଢ଼ି ଗୋପିନୀଗଣ,
ପିଚକାରୀ ଫଗୁ ଧରି କରିବେ ରଣ । ୬୯
ପ୍ରବାଳ-କୁସୁମ-ବତୀ          ସୁଦ୍ୟୁତିମତୀ ବ୍ରତତୀ,
ରତ୍ନପଟ୍ଟ ମୋଦେ ମାତି ଅତି ଉଲ୍ଲାସେ,
ତରୁ ଅଙ୍ଗେ ଅନୁରାଗେ,          ତାଳି ନିଜାଙ୍ଗ ସୁହାଗେ,
ହସିବ ଯମୁନା-ନୀର-ଦର୍ପଣ ପାଶେ,
ମୁଁ ଅଭାଗୀ ପୁଳିନ ଧାମେ,
ପୁଣି ବସି ହସିବି କି ବନ୍ଧୁର ବାମେ ?" ୭୦

( ମଙ୍ଗଳଗୁଜ୍ଜରୀ ) *

ସଖୀ ଶ୍ରୀମତୀ ମତିର ବିନୋଦ ପାଇଁ,
ଘେନି ତାଙ୍କୁ ଫୁଲବନେ ମିଳିଲେ ଯାଇ । ୭୧
କରୁଥିଲେ ହରି ଅସ୍ତଗିରି ଗମନ,
କରୁଥିଲି ତମ ବହିର୍ଗମନେ ମନ । ୭୨
ଫୁଲ୍ଲକୁଳ ମୁଖେ ବୋଳି ରଙ୍ଗମୟୂଖ,
ନାଚୁଥିଲେ ମନ୍ଦେ ହସି ପ୍ରକାଶି ସୁଖ । ୭୩
ଦେଖି ଦିବା ଶେଷ ପରଚର ଗୋପନେ,
ହେଲା ବାତ ରତ ଫୁଲଗନ୍ଧ ହରଣେ । ୭୪
ପ୍ରତିବେଶୀ ପକ୍ଷୀ ଆସି ପ୍ରକାଶି କଳ,
ଚେଁର ଚେଁର ଡାକ ଉଚେ କଲେ ଚହଳ । ୭୫
ମରମର ଶବ୍ଦେ ତରୁ ଭର୍ତ୍ସିଲେ ବାତେ,
କମ୍ପିଲେ ତା କଦାଚାର ଦେଖି ସାକ୍ଷାତେ । ୭୬
ଧାଇଁଲେ ଅକୁଳେ ଅଳି ହୁଙ୍କାର କରି,
ବିଷାଦରେ ଗନ୍ଧହର ପଥାନୁସରି । ୭୭

---

* କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, "ଅସାରସ ଘନକାଳ ହୋଇ ଉଦୟ" ସ୍ୱରେ

ପଳାଇ ନ ପାରି ବାତ ଅତ୍ୟନ୍ତ ଭୟେ,
ଗଲା ଗନ୍ଧ-ଧନସହ ଯମୁନାଶୟେ । ୭୮
ଦ୍ୱିତଗଦ୍ଧେ ଭାଗ ପାଇ ରବିନନ୍ଦନୀ,
ଆନନ୍ଦେ ନାଚିଲା କରି କଲ୍ଲୋଳଧ୍ୱନି । ୭୯
ସଙ୍ଗିନୀ ସଙ୍ଗେ ରଙ୍ଗିନୀ ରାଧାସୁନ୍ଦରୀ,
ତୋଳିଲେ ଏକାଳେ ଫୁଲ ଅଞ୍ଜଳ ଭରି । ୮୦
ମାଳତୀରେ ନେଇ ଡାଳି କେ ବାମାବର,
କହିଲା, "ଏହାକୁ ଛାଡ଼ି ଗଲା ଭ୍ରମର । ୮୧
ଏ ତେବେହେଁ ହସୁଅଛି ଆନନ୍ଦଭରେ,
ରଖିଛି ମିଳନ ଆଶା କାଲି ପ୍ରାତରେ ।" ୮୨
ସଖୀ ବାଣୀ ଶୁଣି ରାଧା ନିଜ ଅଙ୍ଗୁଳି,
ପଦ୍ମଅଡ଼େ ବଢ଼ାଇଲା କିଛି ନ ବୋଲି । ୮୩
ଅଦ୍ଭୁତ-କୁସୁମେ ପୁଣି ମନେ କି ଭାଳି,
ଫିଙ୍ଗିଦେଲା ଅବନୀରେ ବରଜବାଳୀ । ୮୪
ଅକୁଳେ କାନ୍ଦିଲା ମୁଖେ ଦେଇ ବସନ,
କହିଲା, "କୁସୁମେ,ସଖି ! କି ପ୍ରୟୋଜନ ? ୮୫
କେତେ ଦାମ ଗୁନ୍ଥିଛି ମୁଁ ଏହି କାନନେ,
ବନ୍ଧୁ ରମଣୀୟ ଚୂଡ଼ା ବକ୍ଷମଣ୍ଡନେ ।" ୮୬

ବିହାଗ

ପୁଣି ଉଚ୍ଚସ୍ୱରେ ବିଳାପି ଶ୍ରୀମତୀ କହିଲେ ହୋଇ କାତର ଯେ,
"ବ୍ରଜ ବ୍ରଜଭାବ ପଛକୁ ପକାଇ ଛାଡ଼ିଗଲେ ବଂଶୀଧର ଗୋ,
ସହଚରି ! ୮୭
ଏ ବ୍ରଜଧାମରେ ଅଛି ତ ସକଳ ଅଛି ଏ ଅଭାଗୀ ରାଇ ଗୋ,
ବ୍ରଜର ଆଉ କି ସେହି ଶୋଭା ଅଛି ଯିବାରୁ ପ୍ରାଣକହ୍ନାଇ ଗୋ,
ସହଚରି ! ୮୮

ଏହି ଅଛି ସେହି ରମ୍ୟ ବୃନ୍ଦାବନ ଏ ସେହି ଯମୁନାକୂଳ ଗୋ,
ଏ ସେହି ଶୀତଳ ଲତିକା-ମଣ୍ଡପ ଏ ସେହି କଦମ୍ବମୂଳ ଗୋ,
ସହଚରି ! ୮୯

ଏହି ସେହି ଶିଳାସନ ନୀପମୂଳେ ଏ ସେହି ତମାଳମାଳ ଗୋ,
ଅହା କାହିଁ ଅଉ ଏହାଙ୍କ ସେ ଶୋଭା ନ ଥିବାରୁ ନନ୍ଦବାଳ ଗୋ,
ସହଚରି ! ୯୦

ସେ ବାଙ୍କଚୂଳିଆ କଦମ୍ବମୂଳିଆ ଯମୁନାକୂଳିଆ ବିନା ଗୋ,
ଶୋଭାର ଆକର ଏ ବ୍ରଜନଗର ଅଟ ହତଶିରୀ ସିନା ଗୋ,
ସହଚରି ! ୯୧

ଏ ସେହି କୋକିଳକୁଳର କାକଳି ଏ ସେହି ଅଳିଗୁଞ୍ଜନ ଗୋ,
ବନ୍ଧୁ ବିନା ନାହିଁ ଏହାଙ୍କର ସେହି ମାଧୁରୀ ଶ୍ରୁତିରଞ୍ଜନ ଗୋ,
ସହଚରି ! ୯୨

ଯମୁନା-ସଲିଳ-ଶୀକର-ଶୀତଳ ଏ ସେହି ମୃଦୁଳ ବାତ ଗୋ,
ବନ୍ଧୁ ବିନା ଏବେ ଦେହକୁ ଦହୁଛି ଯେସନେ ଦହନ-ପାତ ଗୋ,
ସହଚରି ! ୯୩

ଏହି ସେହି ଶଶୀ ରଜେ ସୁଖେ ହସି ବରଷି କିରଣରାଶି ଗୋ,
ଏହି ସେହି ଫୁଲ୍ଲକୁଳ ତଳ ତଳ ପ୍ରେମେ କୌମୁଦୀରେ ଭାସି ଗୋ,
ସହଚରି ! ୯୪

ନାହିଁ ତ ଏହାଙ୍କ ସେହି ରମ୍ୟ ଛବି ନାହିଁ ସେହି ସୁମାଧୁରୀ ଗୋ,
ବରଜଭୁବନ ଶୋଭାର ଜୀବନ ଯିବାରୁ ମଥୁରାପୁରୀ ଗୋ,
ସହଚରି ! ୯୫

ଏ ସେହି ମଧୁରନାଦିନୀ ଯମୁନା ଏ ସେହି ଧୀରତରଙ୍ଗ ଗୋ,
ଏହି ସେହି ଜୀର୍ଣ୍ଣ-ତରଣୀ ରହିଛି ଏହି ସେହି ଭଗ୍ନମଙ୍ଗ ଗୋ,
ସହଚରି ! ୯୬

ପାଷାଣହୃଦୟ ଧର ଛାଡ଼ି ଗଲେ ଅମ୍ଭର ସେହୁ କାଣ୍ଡାରୀ ଗୋ,
କର ନାନାରଙ୍ଗ ଯମୁନା ତରଙ୍ଗ କେ ଏବେ କରବ ପାରି ଗୋ ?
ସହଚରି ! ୯୭

ଏହୁ ସେହୁ ନୀପ ଯହିଁ ଅମ୍ଭ ବାସ ଚୋରାଇ କଲେ ବନ୍ଧନ ଗୋ,
ଯହିଁ ବନ୍ଧୁ ହୋଇଥିଲେ ଭୂତବେଶ ଏ ସେହୁ ତମାଲବନ ଗୋ,
ସହଚରି ! ୯୮

ଏ ସବୁ କପାଇଁ ନ ଯାଇ ରହୁଛି ଯଦି ଗଲେ ପ୍ରାଣଧନ ଗୋ,
ପ୍ରାଣଧନ ମୋତେ ପାସୋରି ଦେବାରୁ ପାସୋରି ଦେଲା ଶମନ ଗୋ,
ସହଚରି ! ୯୯

ଛାଡ଼ି ଜୀବତେଣ ଗଲେ କଂସଦେଶ ପରିହରି ଦୟା ମାୟା ଗୋ,
କି ଅଶେ ରହୁଛି ଏ ପୋଡ଼ା-ଜୀବନ କି ସୁଖେ ରହୁଛି କାୟା ଗୋ,
ସହଚରି ! ୧୦୦

କାନ୍ଦି କାନ୍ଦି ଗୋଧା ବସିଲେ ମଜନେ ଭୂତଳେ ପୁତ୍ତଳି ପରି ଯେ,
ଜପସ୍ତିତ ଫଳ ଦେଖି ତାଙ୍କ ସଙ୍ଗେ ଖେଳିଗଲେ ସହଚରୀ ଯେ,
ସଦନକୁ । ୧୦୧

ଶମନ-ଭବନ-କଦନ-ଖଣ୍ଡନ ନାମ ଜପ ଅନୁକ୍ଷଣ ହେ,
ମତ୍ତ ଭକ୍ତି-ରସେ ଧ୍ୟାୟିଣ ମାନସେ ଶ୍ରୀଚିନ୍ତାମଣି ଚରଣ ହେ,
ବୁଧଜନ ! ୧୦୨



# ତ୍ରୟୋତ୍ରିଂଶ ଛାନ୍ଦ

ରାଗ—ଚନ୍ଦ୍ରାକୌଶିକ *

## ଜରାସନ୍ଧ ସହିତ ଯୁଦ୍ଧ

ମଥୁରେଶ ନାଶ ସନ୍ଦେଶ ପ୍ରବେଶ ହେଲା ମଗଧେଶ ପାଶେ,
ମଗଧର ପତି ଚମକି ତଡ଼ିତ ବସ୍ତ୍ରପ୍ରୁ ବଚନ ଭାଷେ,
"ରେ ଦୂତ !
କହୁ ବାତୁଳ ପରାୟେ ତୁ ତ, ତୋତେ ଲାଗିଛି ବା ବ୍ରହ୍ମଭୂତ । ୧

* ବୈ, ବ, "ବୁଝି ବୁଧ ଯୁଦ୍ଧ ନ ପାଇଲା ଜଳ" ରାଗେ

ଯକ୍ଷ ନାଗ ଦେବ   ଦାନବ ମାନବ   କମ୍ପିତ ଯା ଭୁଜବଳେ,
ଯାହା ପାଦଭରେ   ବସୁନ୍ଧରା ଥରେ   ଯାହା କରେ ମେରୁ ଟଳେ,
ରେ ଦୂତ !
ତାକୁ ବିନାଶିଲା ନନ୍ଦସୁତ,   ଏ ବାର୍ତ୍ତା କି ତୋ ମନ ସମ୍ଭୂତ ? ୨

ଯଦି ମଦ୍ୟପାୟୀ   ନୋହୁ ଦୂତ ! ତୁହି   କହ ସତ୍ୟ କରି କହ,
କେମନ୍ତେ ମଣ୍ଡ କ   ଅଦ୍ଭୁତବୃତ୍ତାନ୍ତ   ହେଲା ଲାଗୁଛି ସନ୍ଦେହ,
ରେ ଦୂତ !
ମିଥ୍ୟା କହିଲେ ଖଡ୍‌ଗରେ ଦ୍ରୁତ, ହେବ ତୋର ଶିର ଗ୍ରୀବାଚ୍ୟୁତ ।" ୩

ଉତ୍ତରିଲା ଦୂତ,   "ଶୁଣ ରକ୍ଷନାଥ !   କହୁଛି ମୁଁ ସତ୍ୟବାଣୀ,
ଅସମ୍ଭବ ବିଧି   ଇଚ୍ଛାରେ ସମ୍ଭବେ   ବିଧି ଇଚ୍ଛା ନୋହେ ଜାଣି,
ହେ ବିଭୁ !
ଜଳବିନ୍ଦୁ ହୁଏ ଅଶନିଭୁଂ,   ପଡେ ଗହଳ ଉପଳ ଦିବୁଁ । ୪

ନନ୍ଦ ବେନି ବାଳ   ଯେସନ୍ତେ ମହାକାଳ   ପ୍ରବେଶି ମଧୁମଣ୍ଡଳେ,
ମୁଷ୍ଟିକ ଚାଣୁରେ   ଭୀଷଣ କୁଞ୍ଜରେ   ବିନାଶିଲେ ବାହୁବଳେ,
ସେ ହେଲେ,
ତହୁଁ ସଭାତଳେ ଯାଇ ହେଲେ, କାଳ ବିକାଳ କି ଏକମେଳେ । ୫

କଂସର ନୟନ   ହୁଅନ୍ତେ ପତନ   ସେ ବେନି ଭାଇ ବଦନେ,
ଭୟେ ମହାବୀର   ତେଜିଲେ ଶରୀର   ବସି ଜଗତ-ଅସନେ,
ହେ ଶୁଣ,
ଖସି ପଡ଼ିଲେ ଭୂମିରେ ପୁଣି,   ବାତେ ଉଡ଼ି ପଡ଼େ ଯେସନ୍ତେ ତୃଣ । ୬

ଯେସନେ ବିଦ୍ୟୁତ   ହୋଇ ନିପତିତ   ଆକର୍ଷି ଘେନେ ଜୀବନ,
କ୍ଷୁଦ୍ର ଗୋପବାଳେ   ଅସି ସଭାତଳେ   କଂସକୁ କଲେ ତେସନ,
ହେ ଶୁଣ,
ଧରଛନ୍ତି କି ଅଶ୍ଚର୍ଯ୍ୟ ଗୁଣ,   ନାଶ କାର୍ଯ୍ୟେ କେ ଏଡ଼େ ନିପୁଣ ?" ୭

---

(୧) ଯହିଁରୁ ବଜ୍ର ଜନ୍ମେ

ମଗଧର ପତି   କ୍ରୋଧଶୋକେ ଅତି   ଜର୍ଜ୍ଜରି ଯାମାତା ନାଶେ,
ଛାଡ଼ଲ ଅପାର   ତାଳ ନେଇଁ ଧାର   ମୁଖ ରଖି ପିଣ୍ଡାବାସେ,
ସେ କରେ,
ଘନେ ପ୍ରହାରଣ କପାଳରେ,   ଦେଲେ ଅଶ୍ୱାସ ସଚିବବରେ । ୮

ରଦନେ ରଦନ   କରଣ ଘର୍ଷଣ   ଗର୍ଜ୍ଜି କହେ ଜରାସନ୍ଧ,
"କଂସାରଜୀବନ   କରିବ ଚର୍ବ୍ବଣ   ଏ ମୋର ମୁଖ୍ୟ ନିର୍ବନ୍ଧ,
ହେ ତାତ,
ଅଶ୍ରୁ ପେଷିବ ଅନ୍ତକଠାରୁ,   ସିନ୍ଧୁଜଳେ ଦେବ ଯାଦବାଙ୍କୁ । ୯

ମଥୁରାଭୁବନ   କରଣ ଖନନ   ନିକ୍ଷେପିବ ସିନ୍ଧୁଜଳେ,
ପାପୀ ଉଗ୍ରସେନ   ମାଂସକୁ କାଟିଣ   ହବ କରଣ ଅନଳେ,
ମୋ ପଣ,
କରି ତା ରକ୍ତେ ତୃଷା ତର୍ପଣ,   ତାର ଅସ୍ଥି କରବି ଚର୍ବ୍ବଣ । ୧୦

ଯଦୁକୁଳ-ରକ୍ତ-ସ୍ରୋତ ମୁଁ ନିଶ୍ଚିତ   ବୁହାଇବ କରବାଳେ,
ଦେଖିବ ଯାଦବେ   କେ ରକ୍ଷା କରବେ   ସ୍ୱର୍ଗ ଅବନୀ ପାତାଳେ,
ମୁଁ ଅଜ,
ଯିବ ବୈରି ନିର୍ଯାତନେ ସାଜ,   ଘେନି ପଦ୍ମ ରଥ ଗଜ ବାଜୀ । ୧୧

ଅଜ ବୈରତୃଷା   ନାଶିବାକୁ ଆଶା   ଅସ୍ପୃତ ଶୋଣିତପାନେ,
ଯାମାତା-ବିନାଶ   ଶୋକ ଯିବ ନାଶ   ତାଙ୍କୁ ପ୍ରତିଶୋଧ ଦାନେ,
ମୁଁ କରି,
ତାଙ୍କ ନାରୀଙ୍କି ମୋ କନ୍ୟା ପରି,   ତାଙ୍କ ବସତି ପ୍ରେତନଗରୀ । ୧୨

ସାଜ ସେନା ସାଜ   ଅବିଳମ୍ବେ ସାଜ   ଅହେ ରକ୍ଷକୁଳବୀରେ,
ନନ୍ଦର ସୁତଙ୍କୁ   ଅଥବା ନିଜକୁ   ନ ରଖିବ ଏ ମହୀରେ,
ହେ ବୀରେ !
ଅଗ୍ରତଳ୍ପ ଯେ ବସୁ ତ-ନୀରେ,   ଦବ ବୁଡ଼ାଇ ଧନ୍ୟ ମହୀରେ ।" ୧୩

ପାଇ ନୃପାଦେଶ ଘୋର ଉଚ୍ଛ୍ୱାସ ନାଦିଲା ସମରଶୃଙ୍ଗ,
"ସାଜ ସାଜ ସାଜ ଅବିଲମ୍ବେ ସାଜ ସାଜ ସେନା ଚତୁରଙ୍ଗ,"
ସେ ନାଦେ,
ବୀରେ ସଜ ହେଲେ ବୀରୋନ୍ମାଦେ, ଯେସନ୍ତେ ସିଂହ ମତ୍ତ ରକ୍ତସ୍ୱାଦେ । ୧୪
ଧାଇଁଲେ ପଦାତି ହୋଇ ପନ୍ତି ପନ୍ତି ଧରି ବର୍ମ ଚର୍ମ ଅସି,
ପୃଷ୍ଠେ ଶରାସନ ଶର ଏକମନ କୁନ୍ତ କଟିଦେଶେ କଷି;
ସେ ଧରି,
ଶିରେ ଶିରସ୍ତ୍ରାଣ ଦୃଢ଼ କରି, ରୂପେ କୃତାନ୍ତ କିଙ୍କର ପରି । ୧୫
ଗର୍ଜନ ସେହ୍ଲାରି[1] ସଇନ୍ଧବ ସାରି ଅଶ୍ୱ ନାନା ବାଜୀରାଜି,
ବଙ୍କ ଗ୍ରୀବା ଧରି ନୃତ୍ୟ କରି କରି ଆସିଲେ ସମରେ ସାଜି,
ସେ ଯାନ,
କରିବେ କି ଦୂରତ୍ୱକୁ ଧ୍ୟାନ, ଖୁରଘାତେ ମାର୍ଗ କମ୍ପମାନ । ୧୬
ଖଣ୍ଡଶୈଳ ପରି ଯୂଥ ଯୂଥ କରି ଆସିଲେ ସମରବେଶେ,
ରଥାଙ୍ଗ ଘର୍ଘର ଘୋଷିଲା ଗମ୍ଭୀରଘନ ଯଥା ନଭୋଦେଶେ,
ହେ ଧୀର !
ନାଦି ସମରବାଦ୍ୟ ଗମ୍ଭୀର, କଲା ଦିଗଚକ୍ରକୁ ଅଧୀର । ୧୭
ମଟଧନରେଣ ଧରି ବୀରବେଶ ମିଳିଲା ବାହିନୀ ସଙ୍ଗେ,
ଶୋଭେ ଯଥା ମଣି ଗରଳୋଗ୍ର ଫଣୀ-ରମଣୀ ଉତ୍ତମଅଙ୍ଗେ,
ସେ ବୀର,
ରତ୍ନ ଶିରସ୍ତ୍ରାଣେ ମଣ୍ଡି ଶିର, ଧରି ଉଗ୍ରତେଜ କି ମିହିର । ୧୮
ଭାସ୍ୱର ଶୀର୍ଷକ ଭାସ୍ୱର କଞ୍ଚୁକ ଭାସ୍ୱର ନାନା ଆୟୁଧ,
ଶୋଭିଲା ତା ଅଙ୍ଗେ ରଥକରେ ରଙ୍ଗେ ଦୃଷ୍ଟିପଥ କରି ରୋଧ,
ହେ ବୁଧେ !
ଦେଖି ଜରାସନ୍ଧକୁ ସନ୍ନିଧେ, କଲେ ଜୟଶବ୍ଦ ଯେତେ ଯୋଧେ । ୧୯

---

(୧) ସେହ୍ଲାର-ଶ୍ୱେତବର୍ଣ୍ଣ ଅଶ୍ୱବିଶେଷ

ଚଳିଲା ବାହିନୀ ଧରିଲା ଅବନୀ ବରଷାଗଗନ ଛବି,
ମତ୍ତଦନ୍ତୀଦଳ ଜଳଦ ପଟଳ ଅସ୍ତ୍ର ଶସ୍ତ୍ର ତହିଁ ପବି,
ହେ ତହିଁ,
ଅସ୍ତ୍ର ଝଲକ ଚପଳା ହୋଇ, ରଥଘୋଷ ବୃଂହଣ ମନ୍ଦ୍ରହିଁ । ୨୦

ଉଜ୍ଜ୍ୱଳ ସେହାର ବାର ବାର ଯେହ୍ନେ ବଳକ୍ଷ ବଳାକାପନ୍ତି,
ଧୀରେ କଳନାଦ କରଣ ବାରିଦ-ପଟଳ ତଳେ ଶୋଭନ୍ତି,
ଯେ ମାତି,
କେତୁ ଗୃଧ୍ରକଚୟ ଉଡ଼ନ୍ତି, 'ପଥ' 'ପଥ' ନିସ୍ୱନ କରନ୍ତି । ୨୧

ରଷ ପତାକିନୀ କମ୍ପାଇ ମେଦିନୀ ପ୍ରବେଶ ମଥୁରା ପାଶେ,
ଏହି ସମାଚାର ପରଚର ଚର କଲେ ଧାଇଁ ଉର୍ଦ୍ଧ୍ୱଶ୍ୱାସେ,
ସେ ବାସେ,
ବେଗେ ଯାଦବେ କୃଷ୍ଣ ଆଦେଶେ, ଯୁଦ୍ଧେ ବାହାରିଲେ ବୀରବେଶେ । ୨୨

ନଗର ପ୍ରାନ୍ତର ସମରଲହରୀ ଖେଳିଲା ଅତି ପ୍ରବଳେ,
ବାଦନ ଶବଦ ରଣଶୃଙ୍ଗ ନାଦ ଦାରିଲା ନଭକୁ ବଳେ,
ସେ ବେଳେ,
ପତାକିନୀ ହେଲେ ସମ୍ମୁଖୀନୀ, ଭେଟା ଭେଟି କି ତାଡ଼ିତବେଣୀ । ୨୩

ବେନି ସେନା କେବେ ପ୍ରବଳ ଅରବେ ପ୍ରସାରିତ ଅକୁଣ୍ଠିତ,
କେବେ ସ୍ତମ୍ଭାକାରେ କେବେ ଚକ୍ରାକାରେ କେବେ ସୂଚୀ ପରି ସ୍ଥିତ,
ସେ କେବେ,
ଯଥା କାଳବାଡ଼ି ମହାର୍ଣ୍ଣବେ, କେବେ ଭାଗ ଭାଗ ଠାବେ ଠାବେ । ୨୪

ସମର ପ୍ରାଙ୍ଗଣେ ଦନ୍ତୀଗଣ ଯେହ୍ନେ ଚଳ ଅଚଳ-ପ୍ରାକାର,
ନଭେ ପକ୍ଷୀପନ୍ତି ପରସ୍ପରେ ଚଳନ୍ତି ପ୍ରଖର ତୁରଙ୍ଗବାର,
ସେ ଧୀରେ,
ଶବାଚ୍ଛାଦିତ ରଣଭୂମିରେ, ଯେହ୍ନେ ନିଷାଦୀ ସାଦୀ ବଧିରେ । ୨୫

ଅଯୂଥ ଝଂଝଣ   କୁଞ୍ଜର ବୃଂହଣ   ବୀର ଭୈରବହୁଙ୍କାର,
ବାଜୀ ହ୍ରେଷାସ୍ୱର   ରଥର ଘର୍ଘର   ପ୍ରବଳ ଧନୁଷ୍ଟଙ୍କାର,
ସେ ସ୍ଥଳେ,
ବାୟୁ ଗଣିଙ୍କ ଅଥୟ କଲେ,   ଦୟା କ୍ଷମା ତହୁଁ ବେଗେ ଗଲେ । ୨୬

ଅରାତିଙ୍କି ଲକ୍ଷ୍ୟ   କରି ଲକ୍ଷ ଲକ୍ଷ   ଯୋଦ୍ଧା ଧନୁଷ୍ପାଣି ହୋଇ,
ଝର ଝର ଝର   ଶବଦନ୍ତି ହୁଙ୍କାରି   ବାଣ ଆକର୍ଣ୍ଣ ପୂରାଇ,
ସ୍ୱ ରଦେ,
ଦୃଢ଼େ ଦଂଶି ନିଜ ରଦଚ୍ଛଦେ,   ହୋନ୍ତି ଅଗ୍ରସର ପଦେ ପଦେ । ୨୭

ଆଚ୍ଛାଦି ଅସଂଖ୍ୟ   ଶରେ ଅନ୍ତରୀକ୍ଷ   ଯଥା ଗରୁତ୍ମାନ ଅନ୍ଧ,
ଭ୍ରମିଲ ଜିଘାଂସା   ସହ ପ୍ରତିହିଂସା   ରଣେ ଯୋଦ୍ଧାମୂର୍ତ୍ତି ଗ୍ରନ୍ଥ,
କେ ବୀର,
ପଡ଼େ ଭୂମିରେ ହରାଇ ଶିର,   ପାଡ଼େ କେ ଅରି ଅଙ୍ଗ ମଥିର । ୨୮

ଯୋଦ୍ଧାମାନଙ୍କର   ମୁଖ ବର୍ମ ଚର୍ମ   ଅସି ରଞ୍ଜିତ ଶୋଣିତେ,
ସମର ବ୍ୟାଜେ କି   ଫଗୁ ଖେଳୁଛନ୍ତି   ବସନ୍ତେ ଅଗ୍ରହ ଚିତ୍ତେ,
ଦ୍ୱି କର,
ରକ୍ତ ପୋଛୁ ନ ଲଭନ୍ତି ତର,   ଶିରୁଁ ଝରେ ତୁଣ୍ଡେ ରକ୍ତଝର । ୨୯

ନିଜ ରକ୍ତପାନେ   ନାଶନ୍ତି ସେମାନେ   ନିଜ ପ୍ରବଳ ପିପାସା,
ନିଜ ହୃତ୍କୁଣ୍ଡୀରେ   ଗୁଳି ଜିହ୍ୱା ଖେଳେ   ଭାଳି କେବଳ ଜିଘାଂସା,
ସେ ସ୍ଥାନେ,
ମଗ୍ନ ବୈରୀ ମର୍ମସ୍ଥଳ ଧ୍ୟାନେ,   ଚିତ୍ତ ମାତ୍ର ପ୍ରତିଶୋଧ ଦାନେ । ୩୦

ଉଠେ ବୀରନାଦ   ଉଠେ ଆର୍ତ୍ତନାଦ   କେହି କାହାକୁ ନ ଭାଳେ,
ଅରାତି ଅଙ୍ଗକୁ   ଝାମ୍ପି ପଡ଼ୁଛନ୍ତି   ଆୟୁଧ ଗୁଳି କରାଳେ,
ସେ ରଣେ,
ନୃତ୍ୟ କରନ୍ତି କବନ୍ଧଗଣେ,   ଶବଗଣ ଦଳିତ ଚରଣେ । ୩୧

ଏରୂପେ ଉଠିଲ ବେନି ବଳେ ମହାସମର ଘାତ ବଘାତ,
ଭୀଷଣ ବାରିଧି ସଙ୍ଗରେ ଶବାଦୀ ହେଲା କି ପ୍ରଚଣ୍ଡ ବାତ,
ଯେ ସାଦୀ,
ହୁଏ ସାଦୀ ସଙ୍ଗରେ ବବାଦୀ, ଯୁଟନ୍ତି ନିଷାଦୀ ସଙ୍ଗେ ନିଷାଦୀ । ୩୨

ଜମ୍ବୁକାଦ କରି ନାନା ଶବାହାରୀ ଜନ୍ତୁ ଅସି ପଲେ ପଲେ,
ଶବକୁ ଅନନ୍ଦେ ଭୁଞ୍ଜି ରତ ଦ୍ୱନ୍ଦ୍ୱେ ଯଥା ସମରନ୍ତ ମଲ୍ଲେ,
ସେ ସର୍ବ,
କରି ପ୍ରକଟ ବିକଟ ରବ, କରି ଶବମାଂସେ ମହୋତ୍ସବ । ୩୩

ଜରାସନ୍ଧ ସଙ୍ଗେ ରତ ରଣରଙ୍ଗେ ମହାବଳ ଉଗ୍ରବଳ *
ପ୍ରଳୟର କାଳେ ରତ ଯୁଦ୍ଧଗୋଳେ ହେଲେ କି ନଭରୁ ମଙ୍ଗଳ,
ସେ ବେନି,
ଯୁଦ୍ଧ କଲେ ନାନା ଶସ୍ତ୍ର ଘେନି, ବୀରନାଦେ କମ୍ପାଇ ଅବନୀ । ୩୪

ପୁଣି ବେନି ଯୋଧ କଲେ ମଲ୍ଲଯୁଦ୍ଧ ଅସ୍ତ୍ର ଶସ୍ତ୍ର ରଥ ଛାଡ଼ି,
ମୁଣ୍ଡେ ମୁଣ୍ଡ ପିଟି ଉଣ୍ଟୁକି ଅକଟି ଏକ ଅନ୍ୟେ ବସେ ମାଡ଼ି,
କେ ବଳେ,
ମାରେ ବଜ୍ରମୁଷ୍ଟି ବକ୍ଷସ୍ଥଳେ, ଛାଡ଼ି ହୁଙ୍କାର ନାଦ ପ୍ରବଳେ । ୩୫

ବାହୁରେ ବାହୁକୁ ପାଦରେ ପାଦକୁ ଛନ୍ଦ ଉଲେ ଯାନ୍ତି ପଡ଼ି,
ପୁଣି ଉଠିକରି ଏକ ଅନ୍ୟେ ଧରି ହୋଇ କଚଡ଼ା କଚଡ଼ି,
ସେ ଉଲେ,
ପାଦ ମୁଷ୍ଟି ଘାଡ଼ି ମର୍ମସ୍ଥଳେ, ଗଡ଼ାଗଡ଼ି ଯଥା ଚକ ଚଳେ । ୩୬

ହଲୀ ରକ୍ଷ ପରେ ପଡ଼ିଲେ କ୍ରୋଧରେ ଯଥା କ୍ଷୁଧିତ କେଶରୀ,
ପଡ଼େ କଷଣିରେ ନିନାଦ ଗମ୍ଭୀରେ ବଜ୍ରଦନ୍ତ କଡ଼ମଡ଼ି,
ସେ ଉଚ୍ଚେ,
ପିଠି ଧବଳ ଦୀର୍ଘପୁଚ୍ଛେ, ସ୍ଫୀତ କରଣି କେଶର ଗୁଚ୍ଛେ । ୩୭

---

* ବଳରାମ

ଯୋଦ୍ଧା ଚେନ୍ନି ବଳେ ସମର ତେଜିଲେ ରହିଲେ ଦର୍ଶକ ପରି,
ବଜ୍ର ମୁଷ୍ଟିଘାତ ପାଇ ରକ୍ଷନାଥ ରକତ ସ୍ରୋତ ଉଗାରି,
ସେ ହାରି,
ଗଲ ପଳାଇ ନ ରହି ପାରି, ରଣେ ଭଙ୍ଗ ଦେଲେ ଯାଦବାରି । ୩୮

ମଗଧଭୂପାଳ ହାରି ବେଳୁ ବେଳ ପୁଣି ପୁଣି ଦେଲା ଧାଡ଼ି,
ମଧୁପୁର ଜନେ ବିଚାରିଲେ ମନେ, ଯିବାକୁ ମଥୁରା ଛାଡ଼ି,
ସେ ତ୍ରାସେ,
ସୁଖେ ରହି ନ ପାରିଲେ ବାସେ, ହୋଇ ଅଶକ୍ତ ଶତ୍ରୁ ବିନାଶେ । ୩୯

ସମିତ ରଚନ କଲା ଉଗ୍ରସେନ ଚିନ୍ତି ଅରିବଧୋପାୟ,
କରି ସମ୍ବୋଧନ କହିଲେ ବଚନ ତାଙ୍କୁ ପ୍ରଭୁ ଦେବରାୟ,
"ମୁଁ ଜାଣେ,
ବଧ ନୋହିବ ମଗଧରାଣେ, ଚଳ ରହିବା ଅଗମ୍ୟ ସ୍ଥାନେ ।" ୪୦

ତାଳାଙ୍କ ବଦନ ଅନାଇ ବଚନ ଭାଷିଲେ ପୁଣି କେଶବ,
ନଭେ ରବ ଦୃଣ ମଣ୍ଡି ସିନ୍ଧୁଦେଶ ସାଗର ଶୋଭା ଗୌରବ,
ହେ ହଳି !
ଅଛି କୁଶସ୍ଥଳୀ ନାମେ ସ୍ଥଳୀ, ସଉନ୍ଦର୍ଯ୍ୟେ ସୁରପୁରୁଁ ବଳି । ୪୧

ଚଳ ତହିଁ ଯିବା ବସତି ସ୍ଥାପିବା ତେଜି ଏ ମଧୁ ନଗର,"
ଅଗ୍ରଜରେ ଅତି ଦେଖାଇ ସମ୍ମତି, ଭାଷିଲେ ସତ୍ୟନିକର,
"ହେ ଦେବ !
ତହିଁ ରହିଲେ ମଙ୍ଗଳ ହେବ, ତହିଁ ଯିବ ନାହିଁ ପୂର୍ବଦେବ ।" ୪୨

ମଧୁପୁର ଜନେ ବିଷାଦ ବଦନେ ମଧୁପୁର ପରିହରି,
ଦ୍ୱାରକା ଗମନ କଲେ ପରଦିନ ଧେନୁ ସଙ୍ଗେ ହଳୀ ହରି,
ହେ ଜନ !
ହେଉ ଅବିରତେ ତୁମ୍ଭ ମନ, ଚିନ୍ତାମଣି ଚରଣେ ମଗନ । ୪୩



# ଚତୁର୍ବିଂଶ ଛାନ୍ଦ

ରାଗ—ବଙ୍ଗଳାଶ୍ରୀ

## ଗୋପୀ ଗୋପାଳମାନଙ୍କୁ ଦ୍ୱାରକା ନେବାପାଇଁ
## କୃଷ୍ଣଙ୍କର ଦୂତ ପ୍ରେରଣ

ବିରହ-ହୁତାଶ ହେଲା କ୍ରମେ ହ୍ରାସ ବ୍ରଜବାସିଙ୍କ ମାନସେ,
ବିଚ୍ଛେଦଯନ୍ତ୍ରଣା ହେଲା କ୍ରମେ ଊଣା ବିଧାତା ନିୟମବଶେ । ୧
ସମୟର ସ୍ରୋତେ ଭାସି ଅବିରତେ ଗମେ ସୁଖ ଦୁଃଖ ବେନି,
ପ୍ରଶମଇ ଜ୍ୱାଳ ସନ୍ତାପ-ଗରଳ ମହାସୁଧାରସ ଘେନି । ୨
କାଳକ୍ରମେ ଶ୍ୟାମ ତେଜି କଂସଧାମ ଦ୍ୱାରକା କଲେ ବସତି,
ଦ୍ୱାରକାଭୁବନେ କଲେ ଉଗ୍ରସେନେ ଯାଦବକୁଳ ନୃପତି । ୩
ପୂର୍ବକର୍ମ ଘେନି ଗୋପନେ ରୁକ୍ମିଣୀ କୃଷ୍ଣଙ୍କୁ କଲେ ବରଣ,
ତେଣୁ ଚକ୍ରପାଣି ଗୋପନେ ରୁକ୍ମିଣୀ ଆଣିଲେ କରି ହରଣ । ୪
ରୁକ୍ମିଣୀଙ୍କ ସହ କେଶବ ବିବାହ ଲଗ୍ନକାଳ ହେଲା ସ୍ଥିର,
ହେଲା ଦ୍ୱାରାବତୀ ସୁମଣ୍ଡିତା ଅତି ଜିଣି ବାଣୀଦେବୀ ଗିର । ୫
ସଉଧମାଳିନୀ ବିଭବଶାଳିନୀ ନଗରୀ ଉତ୍ତୋଳି ମୁଖ,
ବାରିଧି-ଦର୍ପଣେ ନିଜ ବଦନନେ ଦେଖିଣ ଲଭିଲା ସୁଖ । ୬
ସୁବର୍ଣ୍ଣସଉଧ—ଶିରେ ନାନାବିଧ କେତୁଚୟ ଶୋଭାକରେ,
ଅମର ବିମାନସମୂହ ଯେସନ ହୃଦାଦ୍ରିଶୃଙ୍ଗନିକରେ । ୭
ରାଜପଥ ପାଶେ ମନୋହର ଦଶେ ରଚିତ ତୋରଣଚୟ,
ସାଧି ନେତ୍ରପ୍ରୀତି ନଭେ ପନ୍ତି ପନ୍ତି ଶକ୍ରଚାପ କି ଉଦୟ ? ୮
ମଙ୍ଗଳବାଦନ ବାଜି ଘନ ଘନ ଜମାଇଲା ଦଗାବଳୀ,
ଶଙ୍ଖ ଭେରୀ ତୂରୀ ମୁରଲୀ ମହୁରୀ ବାଜିଲା ତା ସଙ୍ଗେ ମିଳି । ୯
ସହ ନାରିକେଳ ପୂଗ ଚୂତଦଳ ମିଶିଣ କୁସୁମହାରେ,
ହେମକୁମ୍ଭଚୂଳେ ରମ୍ଭା ତରୁମୂଳେ ବିରାଜିଲେ ଦ୍ୱାରେ ଦ୍ୱାରେ । ୧୦

ପ୍ରଫୁଲ୍ଲବଦନା ସୁରମ୍ୟବେଶିନୀ ନାରୀଏ ପୁରି ଅଙ୍ଗୁଳି,
ବାକ-ସୁଧାପ୍ରସୂ ରସନାକୁ ଅଣି ଚାଳିଦେଲେ ହୁଳହୁଳି । ୧୧
ଗାଇଲେ ଗାୟକ ନାଚିଲେ ନର୍ତ୍ତକୀ ମୁଖର ବନ୍ଦୀସକଳ,
ଗାଇଲେ ମଙ୍ଗଳ ଜଗାରେ କି କଳ ଖଣ୍ଡାଧାର ରମ୍ୟାଚଳ(୧) । ୧୨
ବାଜୀପୃଷ୍ଠେ ସାଦୀ କୁଞ୍ଜରେ ନିଷାଦୀ ନାନାବେଶେ ଶୋଭିବନ,
ଅସି ଯୂଥ ଯୂଥ ରଙ୍ଗେ ରାଜପଥ ମଣ୍ଡିଲେ ମୋହି ନୟନ । ୧୩
ପଢ଼ିଲେ ଭୂସୁରେ ବେଦ ଉଚ୍ଚସ୍ୱରେ ନାନା ଛନ୍ଦେ ନାନା ତାନେ,
ବସି ପଦ୍ମାସନେ ତୋଷି ହୁତାଶନେ ଅପ୍ରମିତ ହବିଦାନେ । ୧୪
କେ କହିଲ, 'ଆସ' କେ କହିଲ, 'ଯାଅ' ପଡ଼ିଲା ଯେ ଡାକ ହାକ,
ଗଲେ ଦୂତଗଣ ଦେନି ନିମନ୍ତ୍ରଣ ଚିଠାଉ ଲଡ଼ୁ ଗୁବାକ । ୧୫
ବରଜଜନଙ୍କୁ ଦେନି ଅସିବାକୁ ଉଦ୍ଧବ କୃଷ୍ଣ ଆଦେଶେ,
ବସିଣ ରଥରେ ଅତି ତରତରେ ବାହାରିଲ ବ୍ରଜଦେଶେ । ୧୬
ଉଦ୍ଧବ ହରଷେ ପ୍ରଫୁଲ୍ଲମାନସେ ପ୍ରବେଶି ନନ୍ଦସଦନେ,
ନନ୍ଦ ଯଶୋଦାର ବନ୍ଦଣା ମଧୁର ବହିଲ ଦିବ୍ୟଆସନେ । ୧୭
ଦମ୍ପତିଯୁଗଳ ପୃଚ୍ଛିଲେ କୁଶଳ ଉଦ୍ଧବ ନିକଟେ ବସି,
ଉଦ୍ଧବ ବହନ କଲ ନିବେଦନ ବଚନ-ସୁଧା ବରଷି । ୧୮
"ରୂପଗୁଣେ ଧନ୍ୟା କୁଣ୍ଡୀରାଜକନ୍ୟା ନାମ ତାଙ୍କର ରୁକ୍ମିଣୀ,
ବରିଲେ ଗୋପନେ ମୁରଲୀବଦନେ ହୋଇଣ ଅନୁରାଗିଣୀ । ୧୯
ସ୍ୱୟମ୍ବର ଦିନ ତୁମ୍ଭର ନନ୍ଦନ ବରଣଚିଠାଉ ପାଇ,
ତାଙ୍କୁ ବଳେ ହରି ଆଣିଲେ ସ୍ୱପୁରୀ କୁଣ୍ଡୀରାଜପୁରେ ଯାଇ । ୨୦
ଶୁଭପରିଣୟ ହେବାର ସମୟ ଅଳପ ଦିବସ ଅଛି,
କୃଷ୍ଣଙ୍କ ବଚନେ ତେଣୁ ଗୋପଜନେ ନେବାକୁ ମୁଁ ଆସିଅଛି ।" ୨୧
ନନ୍ଦ ଯଶୋଦାର ସୁଖ-ପାରାବାର ଉଛୁଳି ଉଠିଲା ମନେ,
ଅତି ବେଗ ଧରି ଆନନ୍ଦ-ଲହରୀ ଖେଳିଲା ଅସି ବଦନେ । ୨୨

(୧) କେଉଁଝର ଷ୍ଟେଟ୍‌ର ଖଣ୍ଡାଧାର ନାମକ ପର୍ବତରେ ଗୋଟିଏ ଜଳପ୍ରପାତ ଅଛି

ହେଲା କିଛି କ୍ଷଣ ଭାବଶୂନ୍ୟ ମନ ନଇଲା ମୁଖେ ବଚନ,
ଆନନ୍ଦାଶ୍ରୁଧାର ନନ୍ଦ ଯଶୋଦାର ପ୍ଳାବଇଲା ଗଣ୍ଡ ନୟନ । ୨୩
ଦେଖୁଛନ୍ତି କିସ ଶୁଣୁଛନ୍ତି କିସ କ୍ଷଣେ ନ ପାରିଲେ ଜାଣି,
ଆନନ୍ଦ ଉଚ୍ଛ୍ୱାସ ହେଲା ଅଳ୍ପ ହ୍ରାସ ଫକ୍କା ଲଭି ବ୍ରଜରାଣୀ । ୨୪
ଅତି ବ୍ୟଗ୍ରଭାବେ ଗୃହିଣୀ ଭାବରେ ଅଶ୍ରୁଧାରା ପୋଛି କରେ,
ସୁଖପୂର୍ଣ୍ଣମନେ ଆଗ୍ରହ ବଚନେ ପୃଚ୍ଛିଲେ ଗଦ୍‌ଗଦସ୍ୱରେ । ୨୫
"କହ ବାର୍ତ୍ତାବହ ! ସତ୍ୟ କରି କହ ପ୍ରତୀତ ନୋହୁଛି ମନେ,
ସତେ କି ମୁଁ ପୁଣି ଚିରବିରହିଣୀ ଦେଖିବି ମୋ ନବଘନେ ? ୨୬
ସତେ ଦେଖିବି କି ମୋ କଳାନିଧିକି ପାସୋରିବି ସବୁ ଦୁଃଖ ?
ଅଛି କି କପାଳେ ନିରେଖିବି ତୋଳେ ପୁତ୍ରବଧୂ ଶଶି-ମୁଖ ?" ୨୭
ଉତ୍ତରିଲା ଚର, "ସନ୍ଦେହ ନ କର କହୁଛି ମୁଁ ସତ୍ୟବାଣୀ,
ତୁମ୍ଭ ଚିବାପଥ ନିରେଖି ନିରତ ବସିଛନ୍ତି ବେଣୁପାଣି ।" ୨୮
ଶୁଣି କହେ ନନ୍ଦ, "ହେବ ଏ ସମ୍ବନ୍ଧ ଅମ୍ଭ କୁଳକୁ ଦୂଷଣ,
ଅମ୍ଭେ ଅଟୁଁ ବୈଶ୍ୟ କ୍ଷତ୍ରିୟ ନରେଶ ଏ ବିବାହ ଅସବର୍ଣ୍ଣ । ୨୯
ନରେଶ ଦୁହିତା ହୁଅନ୍ତି ଗର୍ବିତା ବଶେଷେ ବିଳାସଯୁତା,
ଗୋପ ଗୃହକାର୍ଯ୍ୟେ ଅପଟୁ ସହଜେ ଅଟନ୍ତି ନୃପତିସୁତା । ୩୦
ଅଛନ୍ତି ରୂପସୀ ଯେସନେ ଉର୍ବଶୀ ଗୋପକନ୍ୟା ଅଗଣନ,
କରୁଛି କିପାଇଁ ଅମ୍ଭର କହ୍ନାଇ ଏ ଅବିଧି ସଙ୍ଘଟନ ?" ୩୧
ଗୋପବର ବାଣୀ କ୍ରୋଧମନେ ଶୁଣି କହିଲେ କୋପେ ଯଶୋଦା,
"ହେ ଗୋପବଲ୍ଲଭ ! କିସ କର ଲୋଭ କୁଳକୁ ଘେନି ସର୍ବଦା ? ୩୨
ମୋ କାହ୍ନୁ ଘରରେ ଥିବେ ରୂପ ନରେ ସାକ୍ଷାତେ ବିଦ୍ୟାର ସ୍ତୂପ,
କେବେ ପ୍ରାଣନାଥ ହୋଇଲ ପଣ୍ଡିତ କହୁଛ ବାଣୀ ଏରୂପ ? ୩୩
ଭାଗ୍ୟେ ଥିଲେ ସିନା ହେବ ରାଜକନ୍ୟା ଲଭି ପୁତ୍ରବଧୂ ରୂପେ,
ତୁମ୍ଭେ ପଛେ ରହ ଗୃହେ ମୁଁ ନିଶ୍ଚୟ ନ ରହିବି ପୋଡ଼ା ଗୋପେ ।" ୩୪
କହେ ନନ୍ଦ ଶୁଣି, "ତୁମ୍ଭେ ତ ରମଣୀ ନାହିଁ ଗୋ ତୁମ୍ଭଙ୍କୁ ଜଣା,
କି ସ୍ଥିତିସ୍ଥାପକ ଅଟଇ ଯେତେକ ବ୍ୟବସ୍ଥାପକରସନା ।" ୩୫

ବ୍ୟଗ୍ରଭାବେ ରାଣୀ   ପୁଣି ନନ୍ଦରାଣୀ   କହିଲେ ନନ୍ଦଙ୍କୁ ଚାହିଁ,
"ଏ ସୁସମାଚାର   ନଗରେ ପ୍ରଚାର   କର ଡଗର ପଠାଇ । ୩୬
ନ ପାହୁଣୁ ନିଶି   ବରଜବାସୀ   ସଜ୍ଜା ସାରି ଯେ ଯାହାର,
ଉଷା ଆଗମନେ   ଦ୍ୱାରକାଭୁବନେ   ଯିବାକୁ ହେବେ ବାହାର । ୩୭
ଗଣକେ କହନ୍ତି   ଉଷାଯାତ୍ରା ଅତି   ଅଟଇ ମଙ୍ଗଳକର,
ହେ ଗୋପବଲ୍ଲଭ ! କ୍ଷଣେହେଁ ବିଳମ୍ବ   ଏ ଶୁଭକାର୍ଯ୍ୟେ ନ କର ।" ୩୮
ନନ୍ଦର ଆଦେଶେ   ବେଗେ ଗୋପଦେଶେ   ଘୋଷଣା ଦେଲା ଡଗର,
ଉଚ୍ଛୋଳି ଲହରୀ   ପ୍ଲାବି ଗୋପପୁରୀ ଖେଳିଲା ସୁଖ-ସାଗର । ୩୯
ଗୋପ ଗୋପୀ ବେଗେ   ମାନସ ଉଦ୍‌ବେଗେ   କଲେ ଯିବା ସଜ୍ଜାମାନ,
ନିଦ୍ରା ବ୍ରଜ ଛାଡ଼ି   ନିସ୍ୱଣେ ବାହୁଡ଼ି   ଗଲା ନ ପାଇଣି ସ୍ଥାନ । ୪୦
କେଶବ ଚରିତ   ଅମିୟ-ପୂରିତ   ପିଅ ବୁଧେ ! ଅବିରତ,
ହୋଇ ଚିନ୍ତାମଣି—ଚରଣ-ନଳିନୀ—ମକରନ୍ଦ ପାନେ ରତ । ୪୧



## ପଞ୍ଚବିଂଶ ଛାନ୍ଦ

ରାଗ—ରାମକେରୀ *

### ଗୋପାଳମାନଙ୍କର ମଥୁରା ଗମନାର୍ଥ ସଜ୍ଜା

ଏକାନ୍ତ ଉତ୍ସୁକମନରେ ସର୍ବ ବରଜବାସୀ,
କଲେକ ଦ୍ୱାରକା-ଗମନ-ସଜ୍ଜା ଉଲ୍ଲାସେ ଭାସି । ୧
ଲାଗିଗଲା ଗୋଳ ଚହଳ ବ୍ରଜେ ପ୍ରତି ସଦନେ,
ଅଶନ-ଶୟନ-ବାସନା ବୃଥା ଜଣିଲା ମନେ । ୨
'ଚାଲ ହେ' 'ଆସ ହେ' 'ରହ ଗୋ' ଆଦି ଶବଦମାନ,
ଗହଳେ ଉଠି ନ ପାଇଲେ କର୍ଣ୍ଣକୁହରେ ସ୍ଥାନ । ୩

* "ଯେହ୍ନେ କ୍ଷେହରାଜ ବସନ୍ତମାନ ମକରଧ୍ୱଜେ" ରସିକ ହାରାବଳୀ

ପାନରେ କେ ଭରି ରଖିଲା ଖାଦ୍ୟ ନାନାପ୍ରକାର,
କେହୁ ସଜାଡ଼ିଲା ଯାଇଁଳି କେହୁ ବୋଝ ବା ଭାର । ୪
କେହୁ ସଜାଡ଼ିଲା ଶକଟ କେହୁ ଜୁଡ଼ିଲା ମହିଷ,
କେହୁ ବଳୀବର୍ଦ୍ଦ କେହୁ ବା ଅଶ୍ୱ ସାଜେ ବିଶେଷ । ୫
କେ ବ୍ୟଗ୍ର ମଞ୍ଜୁଷା ଫେଡ଼ଇ କେହୁ ଫେଡ଼େ ପେଟିକା,
ବାଛୁ କେ ଘେନେ ଅଳଙ୍କାର କେହୁ ଧୋତ ଶାଟିକା । ୬
ପ୍ରଫୁଲ୍ଲ ମାନସେ ଗୋପୀଏ ରତ ବେଶ ବିନ୍ୟାସେ,
କେ ସିଙ୍ଗାର ଗୃହେ ଗମଇ କେ ବା ଡାକଇ ପାଶେ । ୭
କହୁ ତ ନୋହେ ସେତେ ଅଜ ତାଙ୍କୁ ପଡେ ଅଦର,
ଅଧୀର ତାଙ୍କ ମୁଖ ଜିହ୍ୱା ଖର ଚରଣ କର । ୮
'ମୋତେ ଅଗ' ବାଣୀ ବଦନେ ସିଙ୍ଗାରିଙ୍କି ଗୋପିକା,
ଘେରି ବସିଛନ୍ତି ମଧୁକୁ ଯେହ୍ନେ ମଧୁମକ୍ଷିକା । ୯
କେ ଅଣେ ସୁରଙ୍ଗ ସିନ୍ଦୂର କେହୁ କଜ୍ଜଳ ପାନ୍ତ,
କେ ଅଣେ ନାନା ଅଙ୍ଗରାଗ ରଞ୍ଜିବାକୁ ସୁଗାନ୍ତ । ୧୦
କେ ଅଣେ ଚନ୍ଦନ କସ୍ତୁରୀ ଅଣେ କେ ଗୋରୋଚନା,
ସୁଗନ୍ଧ ତୈଳ କଙ୍କତିକା କେହୁ ବିଧୁବଦନା । ୧୧
ମଣିମୟ ବେଣୀ ଲୋଟିଲା ପୃଷ୍ଠଦେଶେ କାହାର,
ସେ କି କାମ-ଫଣୀ ଖେଳୁଛି ଗର୍ତ୍ତମଧ୍ୟୁଁ ବାହାର । ୧୨
କୁଞ୍ଚିତ-କେଶ ମୂଳ କେହୁ ବାନ୍ଧି କଳକ ଗୁଚ୍ଛ,
ଦୃଷ୍ଟେ କେଶରାଶି ଶୋଭିଲା ଯଥା ମୟୂରପୁଚ୍ଛ । ୧୩
କେହୁ ସ୍ଥୂଳବେଣୀ ମୋଡ଼ିଣ ବିନ୍ୟାସିଲା କବରୀ,
କାମ-ଭୁଜଙ୍ଗେ କି ରଖିଲା ବିଶେ ଯତନ କରି । ୧୪
କେ ଚଳା ଲୋଟଣୀ ଜୁଡ଼ାକୁ କେହୁ ଖୋସିଲା ଖୋସା,
କେହୁ ନିବୀଡ ଲାକ୍ଷାରସେ ପାଦ ରଞ୍ଜିଲା ଯୋଷା । ୧୫
ରଖିଲେ ଅଙ୍ଗେ ନାନା ଭୂଷା ଯହିଁ ସ୍ଥାନ ଯାହାର,
ହେମଲତିକା କି ବହିଲା ଅଙ୍ଗେ କୁସୁମଭାର ? ୧୬

ବେଶ ଦେଖା ଦେଖି ହୁଅନ୍ତି ରାଧା ସଙ୍ଗିନୀ ସଙ୍ଗେ,
ଚାହାନ୍ତି ନିଜର ବେଶକୁ ଦର୍ପଣେ ନାନା ଭଙ୍ଗେ । ୧୭
କେହି କହେ କର ଏମନ୍ତ କେହି କହେ ତେମନ୍ତ,
ପଣ୍ଡିତେ ଭାଷାକୁ କରନ୍ତି ସଂଶୋଧନ ଯେମନ୍ତ । ୧୮
ବେଶକାଳେ ବାଳୀ ଭାଳନ୍ତି, "ଧରି କେମନ୍ତ ବେଶ,
ରସରସିକେ ଭେଟିବ ତାଙ୍କୁ କହିବ କିସ ?" ୧୯
କେ ଭାଳେ, "ତାଙ୍କୁ ମୁଁ କହିବ ଅହେ କୁବୁଜାବନ୍ଧୁ !
ଏବେ ତ ବ୍ରଜ ଶୂନ୍ୟକରି ସବୁ ଯାଇଛୁ ମଧୁ ।" ୨୦
କେ ଭାଳେ, "ସମୀପେ ନ ଯିବ ଦୂରେ ଥିବ ମଉନେ,
ସେ ମୋତେ ଅବଶ୍ୟ ଲୋଡ଼ିବେ ପଦେ ଥିବ ମୁଁ ମନେ ।" ୨୧
କେ ଭାଳେ "ନ ଡରି କହିବ ଅହେ ଭ୍ରମରବର !
ଭୃଙ୍ଗ କପଟେ କରେ ସିନା ବାସିଫୁଲେ ଆଦର ।" ୨୨
ଏରୂପେ ନାନା ଭାବ ଗୋପୀ ଭାଳି ଭାଳିଣ ମନେ,
ରଚନ୍ତି ନାନା ବେଶ ଗୃହୁଁ ଲୁଚିପୂର୍ଣ୍ଣ ନୟନେ । ୨୩
ପରମଉଲ୍ଲାସେ ବରଜସୁତେ ହୁଅନ୍ତି ସଜ,
ତାଙ୍କୁ ଅଙ୍ଗ ବସ ସମାନ ଲାଗୁଅଛୁ ବରଜ । ୨୪
କ୍ଷୀର ସର ଦଧି ନବଣୀ ଅନ୍ନ ନାନା ବ୍ୟଞ୍ଜନ,
ପନ ପୁଡ଼ିଅରେ ବାନ୍ଧନ୍ତି କରି ଅତି ଯତନ । ୨୫
କେ ବୋଲେ, "ରଖୁଆଳସିଙ୍ଗେ ଦେବି କରେ ଭୁଞ୍ଜାଇ,"
କେ ବୋଲେ, "ଏ ବନମାଳାକୁ ଦେବି ଗଳେ ଲମ୍ବାଇ । ୨୬
ରାଜବେ ଅମ୍ଭ ରାଜା ବାମେ ଶରଚ୍ଚନ୍ଦ୍ରମା ମୁଖୀ,
ଅମ୍ଭେ ରଖିଥିଲେ ହୋଇବା ତାଙ୍କ ଦର୍ଶନେ ସୁଖୀ ।" । ୨୭
କେ ବୋଲେ, "ଅମ୍ଭେ ଗୋପସୁତ ଶ୍ୟାମ ଯାଦବପତି,
ସଖାଭାବ ଧରି କେମନ୍ତେ ଯିବା ତାହାଙ୍କ କତି ? ୨୮
ଏକନେ ରହେ ଖଣି ମଧ୍ୟେ ବାଲି ସଙ୍ଗେ ହୀରକ,
ଖଣିରୁ ବାହାର ହେଲେ ସେ ଲଭେ ରାଜମସ୍ତକ । ୨୯

ଆପଣା ସୀମାକୁ ଲଙ୍ଘିଲେ ସେନା ଘଟେ ବିପଦ,
ଆଚରଣ ସେନା ଉଚିତ ଚାହିଁ ନିଜର ପଦ ।” ୩୦
କେ କହେ, “ତୁମ୍ଭର ନାହିଁ ତ କିଛି ବୁଦ୍ଧି ବିଚାର,
କେମନ୍ତେ ଲଭିବ ଦର୍ଶନ କୁଣ୍ଡୀରାଜକୁମାର । ୩୧
ରହନ୍ତି ସେ ତ ଅବରୋଧେ ରହେ ବନ୍ଦୀ ଯେସନ,
ନ ପାନ୍ତି ତାଙ୍କର ଦର୍ଶନ ସର୍ବବ୍ୟାପୀ ତପନ ।” ୩୨
କେ କହେ, “ଅହା କି କଷଣ ହେବା ରାଜଦୁହିତା,”
କେ ପୁଚ୍ଛେ, “କପାଁ ସେ ଲୁଚନ୍ତି କପାଁ ହୁଅନ୍ତି ଭୀତା । ୩୩
ଚିରକାଳ ବନ୍ଦୀ ହେବାଠୁଁ ଭଲ ଜରାୟୁବାସ,
ଅଥବା ଭୂମିଷ୍ଠ ହେବାର ପୂର୍ବେ ଲଭିବା ନାଶ ।” ୩୪
କେ କହେ, “ଶ୍ୟାମ ତ ଅଟନ୍ତି ବ୍ରଜରାଜ-ସନ୍ତାନ,
ଏକଦିନ କରି ନାହାନ୍ତି ଅମ୍ଭଙ୍କୁ ତୁଚ୍ଛଜ୍ଞାନ ।” ୩୫
କେ କହେ, “ଯା ହେବ ତା ହେବ ଶ୍ୟାମ ସମୀପେ ଯାଇ,
ଆଲିଙ୍ଗନ ଦେଇ କହିବ ତାଙ୍କୁ, ‘ହେ ରାଜା ଭାଇ !’ ୩୬
ଏମନ୍ତେ ନାନା ଗଳ୍ପ କରି ଯେତେ ବରଜବାଳ,
ସଜ ହୋଇ ହାସ୍ୟ କୌତୁକେ ବସି କାଟିଲେ କାଳ । ୩୭
ଦ୍ୱାରକା ଗମନ ବାରତା ବ୍ରଜେ ହେଉଁ ପ୍ରଚାର,
ଚମକି ଶୁଣିଲେ ରାଧିକା ହୃଦ ନାଚିଲା ତାର । ୩୮
ତଡ଼ିତର ସ୍ରୋତ ତା ଅଙ୍ଗେ କିବା କଲା ସଞ୍ଚାର ?,
ଶବମୁଖେ ଅବା ପଡ଼ିଲା ଝରି ଅମୃତଧାର ? ୩୯
ହୃଦୟୁ ଉଠିଲା ଉଚ୍ଛୁଳି କିଛୁ ସ୍ଥାନ ନ ପାଇ,
ଊର୍ଦ୍ଧ୍ୱେ ଉଠି କଣ୍ଠନାଳରେ ପରବେଶିଲା ଯାଇ । ୪୦
ହୋଇଲା ମାନସ ଚଞ୍ଚଳ ଯଥା ଶୈଳତଟିନୀ,
ସ୍ରୋତରେ ସେତୁଙ୍କୁ ଭସାଇ ହୁଏ ସିନ୍ଧୁଗାମିନୀ । ୪୧
କୁଟିଳା ମିଳିଲେ ସେକାଳେ ଆସି ଜନନୀ ପାଶେ,
ଗରଗର ମୁଖେ ଅରୁଣ ନେତ୍ରେ କୋପବିକାଶେ । ୪୨

ଧରି ଶୂଳି ନେତ୍ର ବୁଲାଇ ଭଣେ ଚନ୍ଦ୍ରାଳି ବାଣୀ,
"ମାୟାବୀ ଚକ୍ରୀ ନନ୍ଦସୁତେ ମାତଃ ! ନାହିଁ କି ଜାଣି ? ୪୩
ରାଧାକୁ ସମୀପେ ନେବାକୁ କରୁଛି ସେ କୌଶଳ,
ସେ ପୁଣି ହେଉଛି ନରେଶ ତାକୁ ନାହିଁ ତ ବଳ । ୪୪
ନୁହଇ ରାଧିକା ସରଳା ସେ ତ ଅଟେ ଜଟିଳା,
କେମନ୍ତ କୌଶଳେ ସେ ମୋର ନେବେ ଧୂଳି ଢାଳିଲ ? ୪୫
ରାଧାର ଅଙ୍ଗେ ନାହିଁ ସୁଖ ପଥେ କେମନ୍ତେ ଯିବ ?
ପଥକ୍ଳେଶ ସହି ନ ପାରି ତେଜି ପାରେ ସେ ଜୀବ । ୪୬
ନକୁଳ ଯଥା ସର୍ପୀସଙ୍ଗେ ତଥା ଶ୍ୟାମ ମୋ ସଙ୍ଗେ,
କେତେ ମୁଖଭଙ୍ଗି କରେ ସେ ମୋତେ ଦେଖିଣ ରଙ୍ଗେ । ୪୭
ଗାଳି ଦେଲେହେଁ ସେ ନିର୍ଲଜ୍ଜ ମୋତେ କରଇ ହାସ୍ୟ,
ଜନନି ! ଦ୍ୱାରକା ନଗରେ କେବେଁ ମୁଁ ଯିବ ନାହିଁ । ୪୮
ରହୁ ତ ନିବାସେ ରାଧାକୁ ସୁଖେ ଘେନି ସଙ୍ଗରେ,
ନାହିଁ ମୋର କାର୍ଯ୍ୟ ଯିବାର ଦ୍ୱାରବତୀ ନଗରେ ।" ୪୯
କହିଲା ଦୂତୀ, "ନ ଅଣ ଗୋ ଯେମା ଏହା ବଚନେ,
ଅସମ୍ଭବ କଥା ସମ୍ଭବ ମାତ୍ର ତୁମ୍ଭର ମନେ । ୫୦
ଶବାଢ଼ ଉପ୍ରବ ଲୁଞ୍ଛିବେ ବ୍ରଜବାସୀ ସକଳେ,
କି ଦୋଷେ ରଖିବ ଗୃହରେ ବୋଲି ରାଧାକୁ ବଳେ ? ୫୧
ଏହା ଶୁଣି କସ ଭାଳିବେ ନନ୍ଦ ଯଶୋଦା ମନେ,
କି କହିବେ ଶ୍ୟାମ, ଭାଳିବେ କସ ବରଜଜନେ ?" ୫୨
ଚନ୍ଦ୍ରସେଣା ମାତା ଭାଷିଲା, "ଏହୁ କଥା ହୋଇବ,
କୁଟିଳା ରହିବ ସଦନେ ବଧୂ ସଙ୍ଗରେ ଯିବ ।" ୫୩
ରାଧାକୁ ଦେଇ ଏ ବାରତା ଦୂତୀ କହିଲା ହସି,
"ବେଗ ହୋଇ ବେଶ ସାର ଗୋ ଶ୍ୟାମପ୍ରୀତିଲାଳସି ! ୫୪
ସୁକୁଜୀ ଅକୁଜୀ ବେନିଙ୍କ ହେବ ଏକନେ ଠାବ,
ଦେଖାଯିବ କିଏ ହରିବ ଶ୍ୟାମପୀରତି ଲଭି ?" ୫୫

କହିଲ ଶ୍ରୀମତୀ, "ଦୂତି ଗୋ ! ବେଶେ କି ପ୍ରୟୋଜନ ?
ବଶେ ବନ୍ଧୁଙ୍କୁ ରଖିବାକୁ ନୋହେ ମୋହର ମନ । ୫୬
ସତତ ତାଙ୍କର ମୁଁ ହେବ ଏହି ମୋର କାମନା,
କି ଭୂଷଣ ସଖି ! ଦେଖିବ ବନ୍ଧୁ ମୋ ଶୋଭା ସିନା । ୫୭
ସେ ଭୂଷଣ ମୋର ହରିବ ହେଲି ହୀନବେଶିନୀ,
ସତେ କି ସେ ଭୂଷା ଦେଖିବ ମୁହିଁ ହତଭାଗିନୀ ? ୫୮
ଶ୍ୟାମପ୍ରୀତି ଭୁଞ୍ଜୁ କୁବୁଜା ତହିଁ ନାହିଁ ଭାବନା,
ବନ୍ଧୁଙ୍କୁ ଦେଖିବି ସେବରି ମୋର ଏହି କାମନା । ୫୯
କୁବୁଜାଟାରେ ତ ରହିଛନ୍ତି ବନ୍ଧୁଙ୍କ ସମାଦର,
କୁବୁଜାକୁ ଭେଟିବେ ସଜନି ! ମୁଁ ଗୋ କରିବ ପର ?" ୬୦
ଶୋକାନନ୍ଦଧାର ରାଧାର ନେତ୍ରୁ ପଡ଼ିଲା ଖସି,
ଝଟିଲା କି ପ୍ରାତେ କୌମୁଦୀ ଅରୁଣିମାରେ ମିଶି ! ୬୧
ସଖୀ ସହ ରାଧା ମଜ୍ଜିଲେ ନାନା ସଜ୍ଜା କରଣେ,
ପୋଛୁଣ ନେତ୍ରୁ ଅଶ୍ରୁଧାର ନିଜ ପିନ୍ଧାବସନେ । ୬୨
ଅଜି ନନ୍ଦପୁର ଆନନ୍ଦ କେବା ପାରିବ କହି,
କରନ୍ତି ନାନା ସଜ୍ଜାମାନ ନନ୍ଦ ଯଶୋଦା ରହି । ୬୩
ବିବିଧ ଖାଦ୍ୟ ସୁଧାମୟ ଅଣି ରଖନ୍ତି ଭାଣ୍ଡେ,
'ଅଣ,' 'ନିଅ,' 'ରଖ' ଶବଦ ଉଠେ ସଦନଦାଣ୍ଡେ । ୬୪
ସୁଭଦ୍ରାଙ୍କୁ ବେଶ କରନ୍ତି ପୁନିପୁଣୀ ସିଙ୍ଗାରି,
ମନ୍ଦପ୍ରିତ ଅବା ହେଉଛି ପୂତ ଜାହ୍ନବୀବାରି । ୬୫
ଅମୂଲ୍ୟ ରତ୍ନମୟ ହାର ଶୁଭ୍ର ପୀତବସନ,
ଯଶୋଦା ରଖିଲେ ପେଟିରେ କରି ଅତି ଯତନ । ୬୬
ମାତାଙ୍କୁ ସୁଭଦ୍ରା ପୁଚ୍ଛିଲେ, "କାସ ହେବ ଏ ହାର ?"
ଭାଷିଲେ ଯଶୋଦା, "ତୋ ଭ୍ରାତୃଜାୟାଙ୍କୁ ଉପହାର ।" ୬୭
ନ୍ୟଗ୍ରଭାବେ ପୁଣି ପୁଚ୍ଛିଲ ଭଦ୍ରା ଚନ୍ଦ୍ରବଦନୀ,
"ଉପହାର ଭାତୃଜାୟାଙ୍କୁ କାସ ଦେବ ଜନନୀ ?" ୬୮

"ତୋ ଶ୍ରଦ୍ଧା ମମତା ଭକତ ତାଙ୍କ ମହୋପହାର,
ଜନଶ୍ରୁ। ନଣନ୍ଦ ଯେଣୁ ତୁ କୁଣ୍ତୀ ରାଜକୁମାର ।" ୬୯
ଜନନୀ ବଚନ ଶୁଣିଣ ଭଦ୍ରା ମନେ ଆନନ୍ଦ,
ସବୁ ସଜ୍ଜା ସାର ଏକାଳେ ଆସି ମିଳିଲେ ନନ୍ଦ । ୭୦
କହୁଁ କହୁଁ ରାଜି ପାହିଲା ସଜ୍ଜା ସାରି ଯେତ୍ତାର,
ବରଜବାସିଏ ଗୃହରୁ ହେଲେ କ୍ରମେ ବାହାର । ୭୧
ଶିବିକା ଶକଟ ତୁରଙ୍ଗ ଆଦି ବିବିଧ ଯାନ,
ଧୂଳିବାହ୍ରୀ ପଶୁଗଣଙ୍କ ଦାଣ୍ଡେ ନୋହିଲା ସ୍ଥାନ । ୭୨
ଚଢ଼ିଲେ ସକଳେ ଚଳିଲେ ଅତି ଉଦ୍ଧୁକମନେ,
ଶୂନ୍ୟ ହେଲା ବ୍ରଜମଣ୍ଡଳ ମରୁଭୂମି ଯେସନେ । ୭୩
କେଶବଚରିତ ଅମୀୟ ପିଇ ଶ୍ରବଣପଥେ,
ବୁଧେ ! ଚିନ୍ତାମଣି ଚରଣ ଧ୍ୟାନ କର ନିରତେ । ୭୪



## ଷଡ଼୍ବିଂଶ ଛାନ୍ଦ

ରାଗ—ବସନ୍ତୀ, ଅଷାଢ଼ଶୁକ୍ଳ ବାଣୀ *

### ଗୋପାଳମାନଙ୍କର ଦ୍ୱାରକାରେ ପ୍ରବେଶ

କ୍ରମେ ପଥ ଲଙ୍ଘି ବରଜବାସୀ, ଦ୍ୱାରକାନଗରେ ମିଳିଲେ ଆସି,
କୃଷ୍ଣଦୂତଙ୍କୁ ସୁଖେ ସଙ୍ଗେ ଘେନି, ଆନନ୍ଦରେ ନନ୍ଦ ଯଶୋଦା ବେନି,
ହେଲେ ଅଗ୍ରସର, ଯେସନେ ପନ୍ଥ ବାଷ୍ପଶକଟର୧ । ୧
ତାଙ୍କ ପଛେ ଯେତେ ବ୍ରଜବାଳକେ, କଲେ ଗତି ମାତି ଅତିପୁଲକେ,
ବଜାଇ ଶିଙ୍ଗା ମୁରଲୀ କାହାଳୀ, ନାଚ ନାଚିଣ ଦେଇ କରତାଳି,
ନୋହିବ ତ କହି, କି ସୁଖେ ବାଳକେ ଯାଆନ୍ତି ବହି । ୨

* "ଘନେ ହୋଇଥିଲା ଘୋର ବରଷା" ଚୌପଦୀ ବା "ବକେ ବସିଥିଲା ଧ୍ରୁବ ଉପରେ" ବୈଦେହୀଶବିଳାସ । ୧) ରେଳଗାଡ଼ି

ବ୍ରଜବାଳ ପଛେ ବ୍ରଜକାମିନୀ, ଚଳିଲେ ସଧୀରେ କରୀଗାମିନୀ,
ଆନନ୍ଦ-ତରଙ୍ଗ ଖେଳେ ପ୍ରବଳ, ନୟନ-ମୀନ ସନ୍ତରେ ଚଞ୍ଚଳ,
କି ଶୋଭା-ତଟିନୀ, ହେଉଛି ଶୋଭା-ସାଗର-ଗାମିନୀ । ୩

ସର୍ବଶେଷେ ଅନ୍ୟ ବରଜଜନେ, ଦେଖି ଦେଖି ନଗ୍ରଶୋଭା ନୟନେ,
ଆନନ୍ଦେ ହେଉଛନ୍ତି ଅଗ୍ରସର, ଘେନି ଧୂରବାଛୀ ପଶୁନିକର,
ଉତ୍ସୁକନୟନେ, ଦେଖନ୍ତି ଯାଦବେ ବରଜଜନେ । ୪

ଗବାକ୍ଷେ ପୁରନାରୀ ମୁଖଚୟ, ଶୋଭଇ ଯେସନେ ପଦ୍ମନିଚୟ,
ବ୍ରଜସୁନ୍ଦରୀଙ୍କି ଦେଖି ନୟନେ, ସେ ଭାଳନ୍ତି ବସି ଦୁଃଖିତମନେ,
ବରଜନଗର, ଅଟେ ତ୍ରିପୁର-ସୁନ୍ଦରୀଆକର । ୫

ବାଳକ ବାଳିକା ଯୁବା ଯୁବତୀ, ବୃଦ୍ଧ ବୃଦ୍ଧା ଛାଡ଼ି ନିଜର କୃତି,
ରାଜପଥରେ ବଞ୍ଛି ନୟନ, ଦେଖନ୍ତି ହୋଇଣ ଏକାଗ୍ରମନ,
ବାଳକ ବାଳିକା, ଦାଣ୍ଡେ ଧାଇଁ କଲେ ଦେଖା-ଜୀବିକା । ୬

କ୍ରମେ କ୍ରମେ ସବୁ ବ୍ରଜନିବାସୀ, ସିଂହଦ୍ୱାର ପାଶେ ମିଳିଲେ ଆସି,
ଏ ବାର୍ତ୍ତା ପାଇ ତ୍ୱରା ହୃଷୀକେଶ, ଆସିଲେ ଧରି ନଟବର ବେଶ,
ମନ୍ଦ ମନ୍ଦ ହାସ, କରି କରି ବିମ୍ବାଧରେ ପ୍ରକାଶ । ୭

ଗୁଞ୍ଜଅବତଂସେ କେକୀକଳାପ, ପଡ଼ିଛି ବାମକୁ ଢଳି ଅଳପ,
ଶ୍ରବଣମୂଳେ ମକରକୁଣ୍ଡଳ, ଉଜ୍ଜ୍ୱଳ ସିନ୍ଧୁଫଳ ନାସାତଳ,
ବକ୍ଷେ ବନମାଳ, ମଳୟଜରେ ରଞ୍ଜିତ କପାଳ । ୮

କଟୀତଟରେ ରତନ କଙ୍କିଣୀ, ମଧୁର ବାଜି ନିଏ ମନ କିଣି,
ପୀତ କାଛେଣୀକି ପୀତ ଉତ୍ତରୀ, କରେ ବଂଶୀ ଗୋପୀ-ଧୈର୍ଯ୍ୟ-ନାଶୀ,
ପାଦରେ ନୂପୁର, ତାଳଦିଏ ସୁଧା ବାଜି ମଧୁର । ୯

ଏମନ୍ତ ବେଶେ ତ୍ରିପୁରମୋହନ, ବ୍ରଜବାସିଙ୍କି ଦେଲେ ଦରଶନ,
ତାଙ୍କ ହୃଦୟ ଖେଳିଲା ଉଚ୍ଛ୍ୱାସ, ଦେଖିଲା କି ସିନ୍ଧୁ ପୂର୍ଣ୍ଣିମାଶଶୀ ?
ଏ ଦ୍ୱାରକାପୁରୀ, ଆଜି ଧରେ ବ୍ରଜଛବି ମାଧୁରୀ । ୧୦

ଲୋଭି ବ୍ରଜବାସୀ-ନେତ୍ର-ଚକୋର, ସୁଖେ ହରି ଦୀର୍ଘ ପିପାସା ଦୂର,
ଆନନ୍ଦାଶ୍ରୁ ଛଳେ କରେ ଉଦ୍ଗାର, ପାନକୃତ ଅଜୀର୍ଣ୍ଣ ସୁଧାଧାର,
ସୁଧାଶନ ପାଇଁ, ମନ ନେତ୍ର ସଙ୍ଗେ ମିଳିଛି ଯାଇ । ୧୧

ଦେଖନ୍ତେ ଯଶୋଦା ଶ୍ୟାମବଦନ, ଧାଇଁ କୋଳେ ଧରି ଦେଲେ ଚୁମ୍ବନ,
ପୁଣି ପୁଣି ଚୁମ୍ବ ଦେଲେ ବଦନେ, ଆସି ପାଶେ ନନ୍ଦ ଆନନ୍ଦ ମନେ,
ଚୁମ୍ବ ଦେଇ ମୁଖେ, ବୁଲିଲେ କର କୃଷ୍ଣ ଅଙ୍ଗେ ସୁଖେ । ୧୨

ଏ ପରେ ମିଳିଲେ ତାଳାଙ୍କ ଆସି, ତାଙ୍କୁ ନନ୍ଦ ସୁଖାନନ୍ଦରେ ଭାସି,
କୋଳେ ଧରି ମୁଖେ ଦେଲେ ଚୁମ୍ବନ, ଯଶୋଦା ପୁଣି ଚୁମ୍ବିଲେ ବଦନ,
ଗଦଗଦେ ଭଣି, "କାହିଁ ଲୁଚିଥିଲୁ ମୋ ରତ୍ନ ମଣି !" ୧୩

ହସି ହସି ସେଠାରୁ ବେନିଭାଇ, ଗୋପବାଳ ମେଳେ ମିଳିଲେ ଯାଇ,
ତାଙ୍କୁ କୋଳ ଦେଇ ଗୋପବାଳକେ, ନାଚିଲେ ଘେରିଣ ଅତି ପୁଲକେ,
ବଂଶୀନାଦ କରି, ଦେଖ ବୁଧେ ! ଏ ଶୋଭା ନେତ୍ର ଭରି । ୧୪

ପିତା ମାତା ବ୍ରଜବାଳଙ୍କୁ ହରି, ଉଚିତ ବିଧାନେ ସନ୍ତୁଷ୍ଟ କରି,
ମିଳିଲେ ବ୍ରଜସୁନ୍ଦରୀଙ୍କ ପାଶେ, ବଚନ କହୁ ମନ୍ଦ ମନ୍ଦ ହାସେ,
ପ୍ରେମ ସମ୍ଭାଷଣେ, ମୋହିଲେ ବରଜ କାମିନୀଗଣେ । ୧୫

କେଶବ ନୟନ ମତ୍ତଭ୍ରମର, ସଞ୍ଚରିଣ ଚଉପାଶେ ପ୍ରଖର,
ଚୁମ୍ବିଣ ଗୋପୀଙ୍କ କୁସୁମାନନ, ପୁଣି ଲେଉଟି ଆସେ ଘନ ଘନ,
ଶ୍ରୀମତୀ ବଦନେ, ଭୃଙ୍ଗ ମାଳତୀ ପାଶକୁ ଯେସନେ । ୧୬

ଗୋପନେ ରାଧା ଗୁହେଁ ବେଳୁ ବେଳ, ତା ନେତ୍ର ହେଉଁ କୃଷ୍ଣନେତ୍ରେ ମେଳ
ଲଜ୍ଜା ମାନେ ହୁଏ ଅଧୋବଦନୀ, କଠିଣ କୋମଳ ଭାବକୁ ଘେନି,
ମେରୁପାରିବାର, ଧରେ ଯଥା ଜଳ ସହ ତୁଷାର । ୧୭

ସ୍ମରିଣ ସ୍ନେହଲାଳସା ପ୍ରବଳେ, ଜଳି ଉଠିଲା ବେନି ହୃଦସ୍ଥଳେ,
କମ୍ପିତ ଶୀତ ଭଜିଲା ଶରୀର, କଣ୍ଠୁ ବିଭଙ୍ଗ ହୋଇଲା ଗିର,
ହେଲା ଲୋମାଞ୍ଚିତ, ହେଲେ ଠଣାଠଣି ବେନିଙ୍କ ଚିତ୍ତ । ୧୮

ସଙ୍ଗୀତା ସାରନ୍ତେ ରାମ ଶ୍ରୀପତି, ଅସି ଆନନ୍ଦେ ନନ୍ଦ ଯଶୋମତୀ,
ନନ୍ଦ କଣ୍ଠରେ ଘେନିଲେ ହଳୀଙ୍କି, ଯଶୋଦା କଣ୍ଠରେ ବନମାଳୀଙ୍କି,
ଘେନି ଆନନ୍ଦରେ, ପ୍ରବେଶ କଲେ ଶୁଦ୍ଧାନ୍ତମଧ୍ୟରେ । ୧୯
ବରଜ-ରମଣୀ ବ୍ରଜ-ନନ୍ଦନେ, ଗଲେ ତାଙ୍କପଛେ ଆନନ୍ଦମନେ,
ସୁତଙ୍କୁ ଯଶୋଦା କୋଳେ ବସାଇ, ନବଣୀ ଶର୍କରା ଦେଲେ ଭୁଞ୍ଜାଇ,
ପାସୋରିଲେ ଦୁଃଖ, ଦେଖି ରାମ ହରି ପୂର୍ଣ୍ଣେନ୍ଦୁମୁଖ । ୨୦
ବ୍ରଜ-କୁମାରେ ପୁଲକିତ ମନେ, ସୁଖାଦ୍ୟ ଭୁଞ୍ଜାଇ ନନ୍ଦ-ନନ୍ଦନେ,
ହସି ଜନନୀରେ କହିଲେ ବାଣୀ, ନ ଯିବୁଁ ବ୍ରଜେ ଅଜ ବେଣୁପାଣି,
ହୋଇ ତୁମ୍ଭ ଦାସ, ରହିବୁଁ ଏଠାରେ କରିଣ ବାସ । ୨୧
ଦାସ ଦାସୀଗଣ କୃଷ୍ଣ ଆଦେଶେ, ସେବିଲେ ବ୍ରଜବାସିଙ୍କି ବିଶେଷେ,
ଆଣି ଭଣ୍ଡାରୁ ନାନା ଉପଚାର, କରାଇ ତାହାଙ୍କୁ ସ୍ନାନ ଆହାର,
ଆହେ ବୁଧଗଣ ! ମନେ ଚିନ୍ତ ଚିନ୍ତାମଣି ଚରଣ । ୨୨



## ସପ୍ତତ୍ରିଂଶ ଛାନ୍ଦ

ରାଗ—ପଞ୍ଚମବରାଡ଼ି

### ରାଧାଙ୍କର ପୁନର୍ମିଳନ

ଧରି ରଖୁଆଳ ବେଶ କେଶବ କଲେ ପ୍ରବେଶ ବ୍ରଜବାଳୀ ଗୃହ ବାସପୁରେ, ଧରି ସ୍ମିତ ମୁଖଶଶୀ ମଧୁର ମଧୁର ହସି ବଜାଇଣ ବଂଶୀ ସୁମଧୁରେ, ହେ ବୁଧଜନେ ! ସୁଧାମୟ ନେତ୍ରେ ସୁଧା ଢାଳି, ଯଥା ନୀଳନଭ ପାଶେ ତାରକାବଳୀ ପ୍ରକାଶେ ରାଜିଲେ କେଶବ ପାଶେ ବାଳୀ, ହେ ବୁଧଜନେ ! ୧

ଶ୍ରୀମତୀଙ୍କ ଘେନି ସଙ୍ଗେ ସଖୀଗଣ ଗତିରଙ୍ଗେ ଆସୁଛନ୍ତି ମଣ୍ଡି ପୁରପଥ, ସୁରଙ୍ଗଅଙ୍ଗୁ ଉପରେ ହେମକାନ୍ତି ଶୋଭା କରେ ତଳପଦ୍ମେ ରବିକର ବତ, ହେ ବୁଧଜନେ ! ଏ ତୁଳନା ଊଣା ତ କହୁଛରେ, ଅବା ଅନୁପମାଧାର ତନୁପୁରଶୋଭାସାର ଧରି ଧୀରେ ଅବନୀରେ ଚରେ, ହେ ବୁଧଜନେ ! ୨

ମଦନମୋହନ ଶତ ଯା ରୂପରେ ବିମୋହିତ ଅତୁଳିତ ଯା ରୂପ ଭୁବନେ, ଯା ଲାବଣ୍ୟଚ୍ଛଟା ଯେତେ ରମଣୀଙ୍କ ଲୋଭଜନ ତାର ଶୋଭା କେମନ୍ତେ ବଚନେ, ହେ ବୁଧଜନେ ! ଶକ୍ତିବ ଏ ମାନବ-ରସନା, କବି ବାତୁଳ କିକର ବଢ଼ାଇ କଳ୍ପନା-କର ଲେଡ଼ନ୍ତ ସେ ରୂପର ତୁଳନା, ହେ ବୁଧଜନେ ! ୩

କୃଷ୍ଣଠାରୁ ରହି ଦୂରେ ରାଧା ବଦନ-ବିଧୂରେ ପରକାଶି ଲାଜ ହେଲେ ଛୁଡ଼ା, ଛୁଡ଼ା ହେଲେ ସଖି କହି, "ଏ କିସ ଗୋ ପ୍ରାଣସହି ! ନବବଧୂ ପରି କପାଁ ବ୍ରୀଡ଼ା, ଗୋ ରାସେଶ୍ୱରି ! ଦେଖ ତବ ବୃନ୍ଦାବନ-ଶଶୀ, ଅଜ ବୃନ୍ଦାବନଶୋଭା ପ୍ରାଣମନଲୋଭା ପରକାଶ ତାଙ୍କ ବାମେ ହସି, ଗୋ ରାସେଶ୍ୱରି !" ୪

ଯାଇ ଧୀରେ ରାଧା ପାଶେ ମନ୍ଦ ମଧୁମୟ ହାସେ କହିଲେ କମଳ-ପତ୍ର-ନେତ୍ର, "ପ୍ରେମବତି ! କ୍ଷମ ଦୋଷ ନ ରଖ ମାନସେ ରୋଷ ରୁହି ବାରେ ଚାଳ ସୁଧା-ନେତ୍ର, ଗୋ ଜୀବେଶ୍ୱରି ! ଏ ସଂସାର ଚଳେ ଦୈବବଶେ, କରବର ବିଧିବଶେ ହେଲେ ବନ୍ଧ ନରବାସେ ନ ରହେ କି ବନ ତା ମାନସେ, ଗୋ ଜୀବେଶ୍ୱରି ! ୫

ତବ ଅନୁପମାନନ ଦେଖିବାକୁ ମୋ ନୟନ ବରାନନେ ! ସତତ ଅଧୀର, ସତତ ଅଧୀର ଶ୍ରୁତି ସତତ ଅଧୀର ମତି ଶୁଣିବାକୁ ବୀଣା ଜିଣା ଗିର, ଗୋ ଜୀବେଶ୍ୱରି ! ନ କର ବଦନ ଧରଣୀକି, ବନ୍ଧୁ ! ଟେକ ଟେକ ମୁଖ ନାଶ ମୋ ବିରହ ଦୁଃଖ ଢାଳି କର୍ଣ୍ଣେ ସପ୍ରେମ ବାଣୀକି, ଗୋ ପ୍ରେମମୟି !" ୬

ରାଧା ଚିବୁକରେ ପାଣି ରଖି ପୁଣି ବେଣୁପାଣି ଅନ୍ୟକରେ ଧରି ରାଧା କର, ଟେକି ରାଧା ମୁଖ-ଇନ୍ଦୁ ପ୍ରେମଭରେ ପ୍ରେମ-ସିନ୍ଧୁ ଭାଷିଲେ, "ମୋ ଦୋଷ କ୍ଷମାକର, ଗୋ କ୍ଷମାଶୀଳେ ! ଅଛ ପରା ମୋ ହୃଦଈଶ୍ୱରୀ, ଦେଖ ବିରହ-ଅନଳ ହୃଦୟେ ଜଳେ ପ୍ରବଳ ଦୟା ଶାନ୍ତ ପ୍ରେମ ବୃଷ୍ଟି କର, ଗୋ ଜୀବେଶ୍ୱରି !" ୭

କେଶବ ସ୍ମରଣପାଇ ଦ୍ରବ ଦ୍ରବ ହେଲ ରାଈ ଯେସନେ
ତୁଷାର ଉଷାକାଳେ, ଗୃହିଁଲ ଧୀରେ ଅପାଙ୍ଗେ ଚାଳନି ଅଙ୍ଗ
ଶ୍ୟାମାଙ୍ଗେ ସଜଳ କି ନବୀନ ତମାଳେ, ହେ ବନ୍ଧୁଜନେ ! ମଧୁ
ପ୍ରମୋଦିନୀ ହେମଲତା, କିବା ନୀଳନଭେ ଠୁଳ ସେଚର-କର
କୁଳ ଅବା ଘନେ ସ୍ଥିର ବିଦ୍ୟୁଲ୍ଲତା, ହେ ବନ୍ଧୁଜନେ ! ୮

ରାଧା ତନୁ ଲୋମୋଦ୍ଗମ ଧରି ହେଲା ନୀପସମ ପ୍ରକାଶିତ
ହେଲ ସ୍ୱେଦବିନ୍ଦୁ, ତା ନଳିନ ନେତ୍ରଦ୍ୱୟ ହେଲ ସୁଖ-ଅଶ୍ରୁମୟ
ଶୋଭେ ଯଥା ପଦ୍ମେ ହିମବିନ୍ଦୁ, ହେ ବନ୍ଧୁଜନେ ! ସ୍ତମ୍ଭ କ୍ଷଣେ
ଘୋଟିଲା ମାନସେ, ଘନ ଘନ ଦୃଷ୍ଟି ଚାଳି ନିରେଖିଲ ବ୍ରଜବାଳୀ
ଶ୍ୟାମ ମୁଖ-ଶଶୀ ସୁଖ ବଶେ, ହେ ବନ୍ଧୁଜନେ ! ୯

ଲତାକୁ ଯଥା ମଳୟ-ସମୀର କରେ ଅଥୟ ତଥା ରାଧା କମ୍ପେ
ଧୀର ଧୀର, ଧରି ହରି କର କରେ ହାସ ପ୍ରକାଶେ ଅଧରେ କହିଲ
କୋମଳ ଭଙ୍ଗିର, ହେ ବୁଧଜନେ ! "ପ୍ରଭୁ କ୍ଷମା ମାଗେ କି
ଦାସୀଙ୍କ ? ନ କହ ଏ ଅବଧୂଙ୍କ ଦଅ କ୍ଷମା ଅଧୀନୀକ ଦଅ କ୍ଷମା
ବରଜବାସିଙ୍କି, ହେ ଜୀବେଶ୍ୱର !" ୧୦

କୃଷ୍ଣ କହନ୍ତି, "ଅବଧୂ ନ କହେଁ ମୁଁ ରସନିଧି ! ତୁମ୍ଭେ ପରା
ବୃନ୍ଦାବନେଶ୍ୱରୀ, ମୁହିଁ ଦୀନ ପ୍ରଜା ତହିଁ ଏ କଥାକୁ ପ୍ରାଣସହି !
ବୋଲ କପାଁ ଯାଉଛ ପାସୋରି, ଗୋ ଜୀବେଶ୍ୱରୀ ! ଏଥିରେ ତ
ସାକ୍ଷୀ ଅଷ୍ଟସଖୀ," ଶୁଣି କହନ୍ତି ଶ୍ରୀମତୀ, "ଏବେ ସେ ପଦେ ଶ୍ରୀପତି !
ବସିଛନ୍ତି କୁବୁଜା ସୁମୁଖୀ, ହେ ଜୀବେଶ୍ୱର !" ୧୧

ଲଜ୍ଜାନତ ମୁଖେ ହରି କହିଲେ, "ଗୋ ବିମ୍ବାଧରି ! ତୋର
ମନୋହର କଳାକର, କୁମୁଦ ବାନ୍ଧବ ନାମେ ଖ୍ୟାତ ଯେ
ଧରାଧାମେ ତାଙ୍କ ଚର୍ଚ୍ଚା କରଇ କି ପର, ଗୋ ଜୀବେଶ୍ୱରୀ ! ତେବେ
ଅଳି ମାନ ମାନସରୁ, ଲୌହସୂତ୍ର ବଧି ବଳେ ଅନାଦରେ ମୁଖ କଟିଲ
ସଦା ତାର ମୁଖଦର ମେରୁ, ଗୋ ଜୀବେଶ୍ୱର !" ୧୨

କହନ୍ତି ଗୋପିକାବର, "ମୁଁ କର ନାହିଁ ତ ପର କନ୍ତୁ ପର ହୋଇଅଛୁ ସିନା, ତାରକାଙ୍କ ଚନ୍ଦ୍ର ଏକ ଚନ୍ଦ୍ରକୁ ତାରା ଅନେକ ସେ କି ଦୁଃଖୀ ଏକ ତାରା ବିନା, ହେ ଜୀବେଶ୍ୱର ! କରୁଛି ମୁଁ ଏତିକି କାମନା, ହୋଇ ନିତ୍ୟ ସହଚରୀ ସେବିବି ସେବିକା ପରି ପୂର୍ଣ୍ଣ କର ମୋର ଏ ବାସନା, ହେ ଜୀବେଶ୍ୱର ! ୧୩

ପାଦପଦ୍ମ ବଂଶୀଧର ଅଭି ନ କର ଅନ୍ତର ଏ ଦାସୀର ଦୋଷ କ୍ଷମା କରି, ଅଭି ନ ପାରିବ ମୁହିଁ ବିଚ୍ଛେଦର ଦାଉ ସହି ରହିବି ସମୀପେ ଛାୟା ପରି, ହେ ଜୀବେଶ୍ୱର ! ଏହି ମୋର ଏକାନ୍ତ କାମନା, ପଛକେ ପ୍ରେମାଧିକାର ଅନ୍ୟଜନେ ଦାନ କର ନାହିଁ ମୋର ତହିଁରେ ଭାବନା, ହେ ଜୀବେଶ୍ୱର !" ୧୪

ଧରି ଶ୍ରୀମତୀର କର ନାଇ ଧୀରେ ବଂଶୀଧର ରତ୍ନାସନେ ବସିଲେ ସୁହାସେ, ବିଶାଖାଦି ସହଚରୀ ଅଳଃ ଗୃମର ଧରି ବିରାଜିଲେ ରାଧା ଶ୍ୟାମ ପାଶେ, ହେ ବୁଧଜନ ! ଅଷ୍ଟା-ଶକ୍ତି ଦ୍ୱନ୍ଦ୍ୱ ସନ୍ନିଧାନେ, କ୍ଷମା ପ୍ରୀତି ଧୃତି ମତି ଦୟା ଶ୍ରଦ୍ଧା ଶାନ୍ତି ଭକ୍ତି ବିରାଜନ୍ତି କି ନିତ୍ୟ-ବୃନ୍ଦାବନେ, ହେ ବୁଧଜନେ ! ୧୫

ବେଣୀକର ବାହୁପାଶେ ରାଜିଲେ ବେଣୀ ଉଲ୍ଲାସେ ଦିଅଦୋଳି ହେଲେ ମୁଗ୍ଧ ମଧୁ, କିବା ନିଶା ଅପଗମେ ମିଳିଲେ ସୁଖ-ସଙ୍ଗମେ ଚକ୍ରବାକ ଚକ୍ରବାକବଧୂ, ହେ ବୁଧଜନେ ! ହେଲେ ମଗ୍ନ ସୁଖ-ସମ୍ଭାଷଣେ, ଲିଭିଲା ବିରହାନଳ ଲିଭିଲା କି ଦାବାନଳ ଗହଳ ଝଳିଳ ବରଷଣେ, ହେ ବୁଧଜନେ ! ୧୬

ଜନେ ମିଳନମାଧୁରୀ ଦେଖି ସୁଖେ ନେତ୍ର ଭରି ଯେ ମିଳନ ବିଶ୍ୱେ ଅନୁପମ, ବିଶ୍ୱ ନିଯୁତ ନିଯୁତ ଯେଉଁ ମିଳନୁଁ ସମ୍ଭୂତ ସେ ମିଳନ ବିଶ୍ୱସ୍ଥିତି-ଧାମ, ହେ ବୁଧଜନେ ! ନିରେଖି ସେ ମିଳନ ନୟନେ, ବର୍ଣ୍ଣି କି ପାରଇ କବି ସେ ମିଳନ ରମ୍ୟଛବି କଳ୍ପ କଳ୍ପ କଳ୍ପି ଶ ଯତନେ ? ହେ ବୁଧଜନେ ! ୧୭

ଅଜ ଦ୍ୱାରକାଭୁବନ ହୋଇ ନବ-ବୃନ୍ଦାବନ ଭାସେ ନବ ଲାବଣ୍ୟ-ତରଙ୍ଗେ, ପୂଲକ୍ତ ନୀପକୋରକ ପ୍ରେମାଶ୍ରୁ ଯମୁନୋଦକ ପ୍ରକଟିତ ହେଲେ ନବରଙ୍ଗେ, ହେ ବୁଧଜନେ ! ସଖୀଙ୍କର ଗୀତ ପିକକଳ, ଗୋପୀ-ବଦନ-କୁସୁମ ଫୁଟି ଦଶେ ମନୋରମ ଚଳେ ଗୁମସ୍ୱେଦ ମନ୍ଦାନିଳ, ହେ ବୁଧଜନେ ! ୧୮

ଫେଡ଼ଣ ଜ୍ଞାନ-ନୟନ କର ବୁଧେ ଦରଶନ ପ୍ରତ ପଦାର୍ଥରେ ଏ ଜଗତେ, ତ୍ରିଗୁଣମୟୀ ଶ୍ରୀମତୀ ସୁସରସେ ରସିଛନ୍ତି ଯେଣି ସଙ୍ଗେ ଶ୍ୟାମଙ୍କୁ ଗୁପତେ, ହେ ବୁଧଜନେ ! ଏ ବଡ଼ଦେଗୀତ ହେଲା ଶେଷ, ନିରତେ କର ସ୍ମରଣ ଶ୍ରୀଚନ୍ତାମଣି ଚରଣ ନ ହେବ ଯିବାକୁ ପ୍ରେତ-ଦେଶ, ହେ ବୁଧଜନେ ! ୧୯



## ଅଷ୍ଟାବିଂଶ ଛାନ୍ଦ

### କାମ୍ବଜୟନ୍ତୀ— ବୃତ୍ତ

### ସଖୀମାନଙ୍କର ନିବେଦନ

ପ୍ରଫୁଲ୍ଲନୟନ ତାଳି ଅଳୀ ଯୁଟିଲ ବଦନେ,<br>
କହିଲେ ଅନନ୍ଦେ ଭାସି ଶ୍ୟାମଙ୍କୁ ସୁଧାବଚନେ । ୧<br>
"ତବ ନବକଣୋସ୍ୱିକା ଦେଲୁଁ ତବ କରେ ଅଣି,<br>
ହେଲୁଁ ପୂର୍ଣ୍ଣକାମ ଶ୍ୟାମ ! ଦିଅ ଅମ୍ଭଙ୍କୁ ମେଲଣି । ୨<br>
ତମାଳ ଡାଳରେ ହେଲା ହେମଲତା ସମ୍ମିଳନ,<br>
ଏବେ ଅବଲମ୍ବନରେ ନାହିଁ କିଛି ପ୍ରୟୋଜନ । ୩<br>
ରଖିଲୁଁ ବିରହେ ରାଧା ପ୍ରାଣ ଯତନେ ଅପାର ।<br>
ତେଣୁ ତ ଅମ୍ଭର ଅଛି ପୁରସ୍କାରେ ଅଧିକାର । ୪<br>
ମାଗୁଛୁଁ ଏତକ ମାନ ଦୀନ ଭିକ୍ଷୁକ ବଚନେ,<br>
ନ ଦାହ ଏ ହେମାଙ୍ଗୀଙ୍କ ପୁଣି ବିରହ-ଦହନେ ।" ୫

କହିଲେ କେଶବ ହସି, "ହେମ ଝଳିବ ଅନଳେ,"
ଉତ୍ତରିଲା ଦୂତୀ, "ଅତି ଉତ୍ତାପେ କନକ ଗଳେ । ୬
କେବଳ କି ଅନଳରେ ଦୋଷ ହୁଏ ହେମରଙ୍ଗ,
ରସାଣ ସଙ୍ଗରେ ଯଦି ନ ହୁଏ ହେମର ସଙ୍ଗ ? ୭
ଯେ ଅଟେ ଆଶ୍ରିତ ଯାର ତାକୁ ଲଗେ ତା ବେଦନା,
ଅମ୍ଭର କହିବା ଶ୍ୟାମ ! ଅଟଇ ଅଧିକ ସିନା । ୮
ଦେଖ ତା କନକଜିତ-କାନ୍ତି ହୋଇଛି ମଳିନ,
ବଳିନ ଅଙ୍ଗଯଷ୍ଟିରେ ଗଣି ଶିର ଦରଶନ । ୯
ବିରହ ଦିନରୁ ସେ ତ ଦିନେ ବାନ୍ଧି ନାହିଁ କେଶ,
କଷ୍ଟର ପରି କରି ପରିହରିଛି ସେ ବେଶ । ୧୦
ସରାଗେ ତାମ୍ବୂଲରାଗେ ସେ ତ ରଞ୍ଜି ନାହିଁ ଅଧରେ,
ପ୍ରବାଳଲତା-ପ୍ରବାଳରାଗ-ଗଞ୍ଜନ ଅଧରେ । ୧୧

ସେ ଅଞ୍ଜନ ରଞ୍ଜି ନାହିଁ କଞ୍ଜ-ଗଞ୍ଜନ-ନୟନେ,
କରିଛି ସିନ୍ଦୂର ଦୂର ଦୁରନ୍ତ ବିଷ ଯେସନେ । ୧୨
ପିନ୍ଧି ନାହିଁ ନୀଳଚେଳ ସଙ୍କଳିତ ଜାମ୍ବୁନଦେ,
ଘେନି ନାହିଁ ବିଧୁରଜ ମଳୟଜ ମୃଗମଦେ ।"୧୩
କହିଲେ କୋମଳେ ହରି, "ଶୁଣ ଅଗୋ ପିକକଣ୍ଠି !
ଦୀନ ହୃତଧନ ପାଇ ରଖେ ଦେଇ ଶତଗଣ୍ଠି ।" ୧୪
କହିଲା ଶ୍ୟାମଙ୍କୁ ଦୂତୀ, "ଏ କଥା ରଖ ମନରେ,
ଉପବାସୀ ଯେଉଁ ଜନ ନ ଭୁଞ୍ଜେ ସେ ବେଳା ଭରେ ।"୧୫
ଶ୍ରୀମତୀଙ୍କ ଗୃହୁଁ ପୁଣି ହସିଣ କହିଲା ବାଣୀ,
"ପ୍ରାଣଧନ ସହ ରହ ଶ୍ୟାମ-ପ୍ରେମ-ବାଉଳାଣି !"୧୬
ଅଳପ ହସିଣ ରାଧା କହିଲେ ନ ଯାଅ ସଖି !
ରମଣୀ-ଘାତକଜନ କରସ୍ପର୍ଶେ ମୋତେ ରଖି ।"୧୭
କହିଲା ଦୂତୀ, "ନ ଭାଳ ପୂତନାଦଶା ମନରେ,
ଦାରୁଭେଦନ ଭ୍ରମର ବନ୍ଧ କମଳକୋଳରେ ।" ୧୮

କହନ୍ତେ ଶ୍ରୀମତୀ ପୁଣି ରଞ୍ଜି ଅଧର ସୁହାସେ,
"ନ ଯା ସଖି ! ମୋତେ ରଖି କାଳିଆ ନାଗର ପାଶେ ।"୧୯
ଉତ୍ତରନ୍ତେ ସଖୀ, "ଗ୍ରଧେ ନ ଭର ଗୋ ମନେ ତ୍ରାସ,
ଯାଉଛୁଁ ଗୋ ରଖି ତୋତେ କାଳିଆ ନାଗର ପାଶ । ୨୦
ଏ ତ ନୁହନ୍ତି କାଳିୟ ନୁହନ୍ତି ଏ ଅନାଗର,
ନ ଜାଣୁ କି କାଳିୟକୁ ଡରଛନ୍ତି ଏ ଅଗର । ୨୧
ତୋ ନୟନ ତୋ ଅଧର ଅଛନ୍ତି ଅମୃତ-ନଦୀ,
କାଳିଆ ନାଗରେ ତୋର କି ଭୟ ଭରକରଦ !"୨୨
ଏମନ୍ତ ଭାଷିଣ ଆଳୀ ହେଲେ ପାଶରୁ ଅନ୍ତର,
ଶ୍ରୀଚନ୍ଦ୍ରାମଣି ଚରଣ ବୁଧେ ! ଭାଳ ନିରନ୍ତର । ୨୩



## ଊନତ୍ରିଂଶ ଛାନ୍ଦ

ରାଗ—ଘଣ୍ଟାରବ *

### ନବ ରାସ ବର୍ଣ୍ଣନ

ଗୋପୀଙ୍କ ମାନସ ଜାଣି, ଭକ୍ତପ୍ରିୟ ବଂଶୀପାଣି,
ମନ୍ଦ ମନ୍ଦ ହସି ଅମିୟ ବରଷି ପ୍ରକାଶିଲେ ସୁଧାବାଣୀ । ୧
ବ୍ରଜାଙ୍ଗନା ମୁଖ ଚୁହିଁ, କହିଲେକ ଭାବଗ୍ରାହୀ,
"ଯେହ୍ନେ ବୃନ୍ଦାବନ କରନ୍ତୁ ବର୍ତ୍ତନ ରାସରସେ ରସି ନାହିଁ । ୨
ଆସ ମୋ ରାସସଙ୍ଗିନୀ ! ରାସ-ରସ-ତରଙ୍ଗିଣୀ !
ହୋଇ କୃପାବଶ ରାସରସେ ରସ ଗିରଣ-ଯୋଗ-ଭଙ୍ଗିନୀ !" ୩
ଗୋପୀ ହୋଇଣ ସମ୍ମତ, ରାସେ ହେଲେ ସମୁଦ୍ୟତ,
ପିନ୍ଧିଲେ ବସନ ନର୍ତ୍ତକୀ ଯେସନ କଟିରେ ଭିଡ଼ି ପଣନ୍ତ । ୪

---

* "ବକୁଳା କଣ୍ଠ ମୁକୁଟ" ଦେ, ବ

ହୋଇ କର ଧରାଧରି, ମଣ୍ଡଳାକାରେ ସୁନ୍ଦରୀ,
ହେଲେ ପୂରି ପୂରି ମଧ୍ୟରେ କିଶୋର କିଶୋରୀଙ୍କି ଘେରି କରି । ୫

ପଦ୍ମକେଶର ଚୌକତ ଯଥା ଶୋଭା ପ୍ରକାଶନ୍ତ,
ଅତି ଶୋଭାମୟ ରମ୍ୟଦଳଚୟ ଦେଇ ନୟନେ ତୃପତ । ୬

ଅବା ଶଶୁଅମ୍ବା ହରି, ଅନ୍ଦ୍ୟାଶକ୍ତିରେ ବହରି,
ବଣ୍ଟ-ଗ୍ରୋପ୍ତ୍ରୀ ଶକ୍ତିଚୟରେ ଶୋଭନ୍ତି ଗୋଲୋକକୁ ପୂର୍ଣ୍ଣ କରି । ୭

ହରି ଛନ୍ଦେ ହୋଇ ଜଗ୍ତ, ଧେନୁ ସଙ୍ଗେ ବଶ୍ୱଶୋଭା,
ମୁରଲୀ ଅଧରେ ଲଗାଇ ସୁସ୍ୱରେ କଲେ ଧ୍ୱନି ଶ୍ରୁତିଲୋଭା । ୮

ତାଳେ ତାଳେ ବଂଶୀତାନେ, ପାଦ ଗୃଳି ଗୋପୀମାନେ,
ଚନ୍ଦ୍ରାକାରେ ରହି ଧୀର ଧୀର ହୋଇ ଚଳିଲେ ମଞ୍ଜୁଳ ଗାନେ । ୯

ଏକ ଲୟେ ଏକ ସ୍ୱରେ, ଗୋପୀଏ ସୁଧାକଣ୍ଠରେ,
କୃଷ୍ଣ ଗୁଣମାନ କଲେ ସୁଖେ ଗାନ ଅତ୍ୟନ୍ତ ଆନନ୍ଦଭରେ । ୧୦

ବଂଶୀତାନେ ଗୋପୀଗାନେ, ମିଳିଲେ ଭୂଷଣମାନେ,
ମଞ୍ଜୀର ନୂପୁର କିଙ୍କିଣୀ କେୟୂର ରତ ହେଲେ ତାଳଦାନେ । ୧୧

ବାମକୁ କେଉଁ ମଣ୍ଡଳୀ, କେ ମଣ୍ଡଳୀ ଦକ୍ଷେ ଚଳି,
ନାନା ହାବଭାବେ ନୃତ୍ୟ କଲେ ସର୍ବେ ପୂରି ନବ-ରାସସ୍ଥଳୀ । ୧୨

ଚୌଦିଗେ ସମ୍ମୁଖ ଗୃଳି, ନାନା ଭଙ୍ଗେ ବନମାଳୀ,
ନାଚିଲେ ମଧୁର ଧରି ରାଧା କର ଗୋପୀ ଦେଲେ କରତାଳି । ୧୩

ନାଚିଲା ମୋହନଚୂଡ଼ା, ବନମାଳ ଧୈର୍ଯ୍ୟବୁଡ଼ା,
ବକ୍ଷରେ ଦୋହଲି ତାଳେ ତାଳେ ଚଳି ବର୍ଷିଲା ଫୁଲପାଖୁଡ଼ା । ୧୪

ଗୋପୀ ବା ନଳିନୀଚୟ, ଧୀରସମୀରେ ଅଥୟ,
ତେଜି ଖେଳିଖେଳି ପ୍ରେମେ କଲେ କେଳି ହରି ନୟନ ହୃଦୟ । ୧୫

ଉଚ୍ଛୁଳିଲା ରାସରସ, ସିନ୍ଧୁ ଯଥା ପର୍ବବଶ,
କୃଷ୍ଣଙ୍କ ମୁଖରେ ମଜ୍ଜିଲେ ସୁଖରେ ଗୋପୀଙ୍କ ନେତ୍ର ମାନସ । ୧୬

କେ ଗୋପୀ ବଦନଇନ୍ଦୁ, ସ୍ରାବେ ସ୍ୱେଦ-ସୁଧାବିନ୍ଦୁ,
କେହୁଁ ଗୋପୀ ଚେଳ ହୁଅନ୍ତେ ଶିଥିଳ ନାଚେ ଭଣ୍ଡ ପଂକ୍ତି ପିଣ୍ଡି । ୧୭

ଶ୍ଳଥ ହେଉଁ କେଶ-ବନ୍ଧ, ଖସି ପଡ଼େ ସୁମନସ,
ଶୋଭି ପରକାଶି ପଡ଼ନ୍ତି କି ଖସି ମୂର୍ତ୍ତିମାନ ପ୍ରେମରସ । ୧୮

ଶ୍ରୁତି ମୂଳରେ ତାଟଙ୍କ, ଦୋଳେ ଗ୍ରୀବା ହେଉଁ ବଙ୍କ,
ନିତମ୍ବ ଉପର ଟଳେ କାଞ୍ଚୀହାର ରମ୍ୟ ଶୋଭା ପ୍ରକାଶକ । ୧୯

କଠିନ ପୀବର କୁଚ, ନିତମ୍ବ ପୃଥୁଳ ଉଚ୍ଚ,
ପରସ୍ପରେ ହାସ୍ୟ କରନ୍ତି ପ୍ରକାଶ ପରସ୍ପରେ କର ଗୁଞ୍ଜ । ୨୦

ହୋଇ ପ୍ରେମେ ଅତି ଭୋଳ, ଉନ୍ମତ୍ତ ଗୋପିନୀକୁଳ,
କେ ଦେଲା ଚୁମ୍ବନ କେହୁ ଆଲିଙ୍ଗନ କେ ଦେଲା କୃଷ୍ଣଙ୍କୁ କୋଳ । ୨୧

ବିଶ୍ୱ ସୃଷ୍ଟି ରକ୍ଷା ଲୟ, ଯେଉଁ ଲୀଳାରୁ ଉଦୟ,
ସେ ଲୀଳା ଆଭାସ କଲେକ ପ୍ରକାଶ ମର୍ତ୍ତ୍ୟଧାମେ ଲୀଳାମୟ । ୨୨

ଯୋଗିଙ୍କ ଜ୍ଞାନ-ନୟନ, ଯେ ଲୀଳା କରେ ଦର୍ଶନ,
ନନ୍ଦସୁତରୂପୀ ବିଶ୍ୱବ୍ୟାପିଙ୍କର ସେ ଲୀଳା ଦେଖେ ନୟନ । ୨୩

ଆସିଣ ଅମରମାନେ, ନଭେ ରହିଣ ବିମାନେ,
ରାସେଶ୍ୱର ହରି ରାସର ମାଧୁରୀ ଦେଖି ଭୋଳ ସ୍ତବଗାନେ । ୨୪

କହି ପାରିବ କି କବି, ସେ ଲୀଳାର ରମ୍ୟ ଛବି,
ଯାହା ଭକ୍ତନେତ୍ର ଦେଖିପାରେ ମାତ୍ର ଧ୍ୟାୟୀ ଭକ୍ତ-କଞ୍ଜ-ରବି । ୨୫

ଅହେ ଜ୍ଞାନୀ ଯୋଗୀଜନ ! ଫେଡ଼ିଣ ଦିବ୍ୟନୟନ,
ଦେଖ ରାସଲୀଳା ଚିନ୍ତ ଭବ-ଭେଳା ଶ୍ରୀଚିନ୍ତାମଣି ଚରଣ । ୨୬



# ତ୍ରିଂଶ ଛାନ୍ଦ

### ରାଗ—ଖଣ୍ଡ ପାହାଡ଼ିଅ କେଦାର

## ଦେବତାମାନଙ୍କର ସ୍ତବ

ଅସି ଗଗନେ ଅମରକୁଳ, ଦେଖିବା ପାଇଁ ହୋଇଲେ ଠୁଳ,
ସୃଜନ ସ୍ଥିତି ପ୍ରଳୟମୂଳ, ଲୀଳା ଅତୁଳ ଯେ,
ମିଳି ସରବ ଗାଇଲେ ସ୍ତବ ଆନନ୍ଦେ ଭୋଳ ଯେ । ୧

ଜୟ ଗୋପାଳପତି-ନନ୍ଦନ, ଜୟ ଗୋପିନୀ-ହୃଦ-ଚନ୍ଦନ,
ଜୟ ନିଖିଳ-ବିଶ୍ୱ-ବନ୍ଦନ, ଭବବନ୍ଧନ ଯେ,
ତବ କରୁଣା-କଣା ମାତ୍ରରେ ଲଭେ ଛେଦନ ଯେ । ୨

ଜୟ ସୁଦାମା-ଦୁଃଖ-ଭଞ୍ଜନ, ଜୟ କାଳୀୟ-ଦର୍ପ-ଗଞ୍ଜନ,
ଜୟ ଭକତ-ନେତ୍ର-ଅଞ୍ଜନ, ବିଶ୍ୱରଞ୍ଜନ ଯେ,
ଜଗତ-ଅଳି ତୋ ଗୁଣାବଳୀ କରେ ଗୁଞ୍ଜନ ଯେ । ୩

ଏ ଯେ ଭୁବନ ବେନିସପତ, ହେଲେ ପ୍ରବଳ ପାପେ ତପତ,
ତୁ ନିଜ ରୂପ କରି ଗୁପତ, ହୋଇ ପ୍ରାପତ ଯେ,
ବିବିଧ ରୂପ; ପୁଣି ବ୍ରହ୍ମାଣ୍ଡେ ଥାଇ ବ୍ୟାପତ ଯେ । ୪

ପ୍ରେମ ବାରିଧି ସୁତରଙ୍ଗରେ, ଖେଳିବା ପାଇଁ ଭକ୍ତ ସଙ୍ଗରେ,
ଜଗତ ହିତ ସ୍ୱରଥାଙ୍ଗରେ, ଲୀଳାରଙ୍ଗରେ ଯେ,
ସାଧିବା ପାଇଁ ହୋଇ ବ୍ୟକତ ନାନା ଅଙ୍ଗରେ ଯେ । ୫

ଚକ୍ଷୁଗୋଚର ତୁ ନିରାକାର, ଜ୍ଞାନଗୋଚର ତୁହି ସାକାର,
ତୁ ଏକରୂପ ନାନା ପ୍ରକାର, ତୁହି ଓଁକାର ଯେ,
ଏ ବିଶ୍ୱ-ବର୍ଣ୍ଣମାଳା ମଧ୍ୟରେ ତୁହି ଅକାର ଯେ । ୬

ସାକାର ଯେତେ ତୋର ଭକତ, ତେଣୁ ସାକାରେ ହୋଇ ବ୍ୟକତ,
ତାହାଙ୍କୁ କରୁ ଭବୁଁ ମୁକତ, ଅତି ଶକତ ଯେ,
ସାକାର ନିରାକାରରେ ହେବା ଅନୁରକତ ଯେ । ୭

ତୋର ମୂରତି ମହା-ଆକାଶ, ତୋହର ସତ୍ତା ଶୂନ୍ୟସଙ୍କାଶ,
ନ ହେଲେ ରୂପ ଧରି ପ୍ରକାଶ, ଚିତ୍ତ-ଆକାଶ ଯେ,
ଭକତେ ଧରନ୍ତି ତୋ ମୂର୍ତ୍ତିଶଶୀ ପୂର୍ଣ୍ଣବିକାଶ ଯେ । ୮

ଶ୍ରୀମତୀ [illegible] ଆଦିଶକତି, ଗୋପୀଏ ପ୍ରେମ ପ୍ରୀତି ବ୍ୟକତି,
ଭଜନ୍ତି ସଦା ତୋହର କତି, ଗୋପୀଭକତି ଯେ,
କାମବର୍ଜିତ ଦାମ୍ପତଗତ ଅନୁରକତି ଯେ । ୯

ନାହିଁ ତୋହର ଶେଷ ସମ୍ଭବ, ଅଛି ତୋହର ଶେଷ ସମ୍ଭବ,
ତୋର ନିକଟେ ହୁଏ ସମ୍ଭବ, ଯା ଅସମ୍ଭବ ଯେ,
ଏହା ନ ବୁଝି କୁତର୍କେ ମଜ୍ଜି ମୋହିତ ଭବ ଯେ । ୧୦

ଅହା ତୋ ରୂପ କେଡ଼େ ମଧୁର, ନେତ୍ର-ସମ୍ପତ୍ତି ଗୋପ-ବଧୂର,
ତୋ ମୁଖ ପୂର୍ଣ୍ଣ-ବିଧୁ ବିଧୁର, ପାତକ ଧୂର ଯେ,
ତୋ ରୂପ ନେତେ ପଡ଼ିବା ମାତେ ହୁଅଇ ଦୂର ଯେ । ୧୧

ତ୍ରିଲୋଚନ ତୁ ଚକ୍ରଧର, ତୁ ହରିହର ଶୂଳାଗଧର,
ଅମ୍ଭଙ୍କୁ ମାୟା-ପାଶେଁ ଜଡ଼ିର, ଦୋଷ ନ ଧର ଯେ,
ଅମ୍ଭ ଆଶ୍ରୟ ହେ ଚିନ୍ତାମଣି ! ଚରଣ ତୋର ଯେ । ୧୨

ଅମରମଣି ଦେବନିକର, ଅମ୍ଭେ ସକଳ ତୋ ପରିକର,
ରୁକ୍ମଣୀବର ! କରୁଣା କର, ପେଷି ଚକର ଯେ,
ନାଶ ଅମ୍ଭର ସୁଭଦ୍ରାଙ୍କର ମୋହ-ନ କର ଯେ । ୧୩

ହେ କୃଷ୍ଣପ୍ରିୟେ ! କୃଷ୍ଣଭାମିନି ! ଶ୍ୟାମ-ଘନେ ତୁ ସଉଦାମିନୀ,
ତୁ ସୁଖ-ଦିବା ଦୁଃଖ-ଯାମିନୀ, ବିଶ୍ୱସ୍ୱାମିନୀ ଯେ,
ତୁ ବ୍ରଜଧାମେ ରାଧାରୂପିଣୀ ଗୋପକାମିନୀ ଯେ । ୧୪

ରାସାନ୍ତେ ଗୋପୀ ସୁଖବେଗରେ, ହୋଇଲେ ଠୁଳ କୃଷ୍ଣ ଆଗରେ,
ଭାସିଣ ସୁଖ-ପ୍ରେମ-ସାଗରେ, କି ସୁହାଗରେ ଯେ,
କୃଷ୍ଣଙ୍କୁ ଦେଲେ ଚୁମ୍ବାଲିଙ୍ଗନ ଅନୁରାଗରେ ଯେ । ୧୫

ନୀଳାଚେନ୍ଦ୍ର ସ୍ତବ ସାର ସୁମନ, ଯେଉଁ ସଦନେ କଲେ ଗମନ,
ସୁଜନେ ଜନ୍ମ କର ଶମନ, ଅର ଦମନ ଯେ,
ଶ୍ରୀଚନ୍ଦ୍ରାମଣି-ଚରଣାମ୍ବୁଜେ ରଖିଣ ମନ ଯେ । ୧୬




କଟକ ଦତ୍ତପ୍ରେସରେ ଶ୍ରୀ ହରମୋହନ ଦତ୍ତଙ୍କ ଦ୍ୱାରା
ମେସିନ୍‌ଯନ୍ତ୍ରେ ମୁଦ୍ରିତ । ୧୯୩୪

